# ଶିଶୁ ଓଡ଼ିଆ ବର୍ଣ୍ଣମାଳା

ନିର୍ମଳ କାନ୍ତ ମହାନ୍ତି

# ଶିଶୁ ଓଡିଆ ବର୍ଣ୍ଣମାଳା

- ଲେଖକ -
*ନିର୍ମଳ କାନ୍ତ ମହାନ୍ତି*

- ପ୍ରକାଶିକା -
ଶ୍ରୀମତୀ ସୁନନ୍ଦିତା ମହାନ୍ତି
'ସୃଷ୍ଟି'
ପ୍ଲଟ୍ ନଂ. ୪୯୭୧/୮, ବୀର ସୁରେନ୍ଦ୍ର ସାଏ ନଗର,
ଭୁବନେଶ୍ୱର - ୭୫୧୦୦୭

- ପ୍ରଥମ ପ୍ରକାଶ -
୧୬.୦୫.୨୦୦୫

- ମୁଦ୍ରଣ -
ପ୍ରିଣ୍ଟରସ୍ କ୍ରାଫ୍ଟ,
ଶହିଦ ନଗର, ଭୁବନେଶ୍ୱର

ମୂଲ୍ୟ - ୧୨ ଟଙ୍କା

**Dr. D.P. Pattanayak** (Padmashree)
Former Director, Central Institute of Indian Languages
Former Jawaharlal Nehru Fellow
Former Chairperson, Eastern Regional Committee, NCTE
Professor Emeritus, Utkal University of Culture
Vice-President, AIMAV (UNESCO)
President, Transparency International, Orissa Chapter
President, India - Tibet Friendship Association, Orissa Chapter

B-188, Baramunda Duplex
Bhubaneswar - 751 003
Tel : (0674) 2354138 (R)



# ମୁଖବନ୍ଧ

ସୁଭାଷ ଚନ୍ଦ୍ର ମହାପାତ୍ର (ମହାସମର)ଙ୍କ ଓଡ଼ିଆ ବର୍ଣ୍ଣମାଳା ବିଭବ ଏବଂ ବିଭାବ ଲେଖା ୧୮ ଜାନୁଆରୀ ୨୦୦୪ ସମାଜରେ ଦେଖିଲି । ମୋର ପ୍ରଥମ ପ୍ରତିକ୍ରିୟା ହେଲା ଯେ ଆମେ ସଂସ୍କୃତକୁ ଛାଡ଼ି ଓଡ଼ିଆକୁ ବିଚାର କରିବା ଶିଖିଲୁ ନାହିଁ । ଓଡ଼ିଆରେ ବ୍ୟବହାର କରାଯାଉଥିବା ଶବ୍ଦକୁ ସଂସ୍କୃତ ଶବ୍ଦ ଓ ଇଂରାଜି ଶବ୍ଦ କହିଲାବେଳେ ଏମାନେ ଯେ ଓଡ଼ିଆ ଶବ୍ଦ ଏକଥା ଆମେ ଭୁଲିଯାଉ । ଇଂରାଜିରେ ଅଶି ପ୍ରତିଶତ ଶବ୍ଦ ଅଣ ଇଂରାଜୀ ସୂତ୍ରରୁ ଆସିଥିଲେ ସୁଦ୍ଧା ଏଗୁଡ଼ିକୁ ଫରାସୀ କିମ୍ବା ଭାରତୀୟ ଶବ୍ଦ ବୋଲି କେହି ଚିହ୍ନାନ୍ତି ନାହିଁ । ଏ ସବୁକୁ ଇଂରାଜି ଶବ୍ଦ ବୋଲି କୁହାଯାଏ । ଇଂରାଜିକୁ ଭାରତୀୟ ଭାଷାରୁ ଯାଇଥିବା ଶବ୍ଦମାନଙ୍କ ପାଇଁ Hobson Jobson ନାଁରେ ଗୋଟିଏ ସ୍ୱତନ୍ତ୍ର ଅଭିଧାନ ଅଛି । ଏହା କେବଳ ଭାଷା ବିଜ୍ଞାନୀଙ୍କ କାମରେ ଲାଗେ । ସାଧାରଣ ଲୋକେ ଏହି ଶବ୍ଦ ଗୁଡ଼ିକୁ ଇଂରାଜି ଶବ୍ଦ ବୋଲି କହନ୍ତି । ଆମେ ଯେ ଖାଲି ଆମ ଶବ୍ଦକୁ ତତ୍ସମ, ତଦ୍ଭବ, ଦେଶୀ ଓ ବୈଦେଶିକ ଶବ୍ଦ କହୁ ନୁହେଁ, ଆମେ ଏ ଗୁଡ଼ିକୁ ଓଡ଼ିଆ ଶବ୍ଦ ବୋଲି କହୁ ନାହୁଁ । ଆମେ ଯଦି ପ୍ରଚଳିତ ଓଡ଼ିଆ ଶବ୍ଦକୁ, ସିଏ ଯେଉଁ ସୂତ୍ରରୁ ଆସୁନା କାହିଁକି, ଓଡ଼ିଆ ଶବ୍ଦ ବୋଲି ସ୍ୱୀକାର କରିବା ତେବେ ଉଜାଣି ଉଠି ତା'ର ଅତୀତ ଅନୁସନ୍ଧାନ କରିବା ସୁବିଧା ହେବ । ଗୋଟିଏ ସମୟରେ ଆଧୁନିକ ଇଉରୋପୀୟ ଭାଷାମାନେ ଲାଟିନ୍‌ରୁ ଉଦ୍ଭୂତ ହୋଇଥିବା ଲୋକେ ବିଶ୍ୱାସ କରୁଥିଲେ । କିନ୍ତୁ ଆଧୁନିକ ଭାଷାକୁ ଧରି ଅତୀତର ପୁନର୍ଗଠନ କଲାବେଳେ ଜଣାଗଲା ଯେ, ଏମାନେ ଲାଟିନ୍‌ରୁ ନୁହେଁ, ଲାଟିନର ଭଉଣୀ ଗୋଟିଏ କଥିତ ଭାଷାରୁ ଉଦ୍ଭୂତ ।

ଓଡିଆ ବର୍ଣ୍ଣମାଳାରେ କେତୋଟି ଅକ୍ଷର ଅଛି ଏ ନେଇ ବହୁମତ ଦେଖିବାକୁ ମିଳେ । କେହି କେହି ବର୍ଣ୍ଣମାଳାରେ ୫୧ ବର୍ଣ୍ଣ କହିଲା ବେଳେ କେହି ୨୪୭ ବର୍ଣ୍ଣଥିବା କଥା କହନ୍ତି । ଆହୁରି ଅନେକେ ଯା ଭିତରେ ଭିନ୍ନ ଭିନ୍ନ ସଂଖ୍ୟା ଗଣନ୍ତି । ଅତୀତରେ ଓଡିଆ ଭାଷାରେ ୧୬ ସ୍ୱରବର୍ଣ୍ଣକୁ ଆଦ୍ୟରେ ରଖି ଷୋଡଶା, ୩୪ ବ୍ୟଞ୍ଜନ ବର୍ଣ୍ଣକୁ ଆଗରେ ରଖି ଚଉତିଶା ଲେଖା ଯାଉଥିଲା । ଏ ଉଭୟକୁ ଏକାଠି ମିଶେଇ ପଞ୍ଚାଶ ବର୍ଣ୍ଣାକ୍ଷର ନିୟମରେ ମଧ ରଚନା କରାଯାଉଥିଲା । ଇଏ ସବୁ ପୁରୁଣା କଥା । ଓଡିଆରେ ବର୍ତମାନ ଛ'ଟି ସ୍ୱରବର୍ଣ୍ଣ ଅଛି । ୩୨ଟି ବ୍ୟଞ୍ଜନ ବର୍ଣ୍ଣ ଅଛି । ଅନୁସ୍ୱାର, ବିସର୍ଗ, ଚନ୍ଦ୍ରବିନ୍ଦୁ ଓ ହଳନ୍ତ ତ ଅଛି । ଅନୁସ୍ୱାର ବ୍ୟଞ୍ଜନ ଓ ଚନ୍ଦ୍ରବିନ୍ଦୁ ସ୍ୱରକୁ ଅନୁନାସିକ କରିବାପାଇଁ ବ୍ୟବହାର ହୋଇଥାଏ ।

କହିବା ଭାଷା ଯେତେ ଶୀଘ୍ର ବଦଳେ ଲେଖାର ଭାଷା ସେତେ ଶୀଘ୍ର ବଦଳେ ନାହିଁ । ହ୍ରସ୍ୱ ଦୀର୍ଘ ଭେଦ କହିବା ଭାଷାରୁ କେବେଠୁ ଗଲାଣି । ସେହିପରି – 'ଶ ଷ ସ', 'ଜ ଯ' ର ଭେଦ କହିବା କଥାରୁ ଗଲାଣି । କିନ୍ତୁ ଲେଖା ଭାଷାରେ ଏହା ସୁରକ୍ଷିତ । ଯୁକ୍ତି କରାଯାଏ ଯେ ଶବ୍ଦର ଐତିହାସିକ ଅର୍ଥକୁ ଅଲଗା ରଖିବାପାଇଁ ଏହାର ପ୍ରୟୋଜନ ଅଛି । ଯେପରି ଶର, ସର । କଥା ହେଉଛି, ଏହି ଅକ୍ଷର ଗୁଡ଼ିକୁ ବାଦ ଦେଇଦେଲେ ପୁରୁଣା ପୋଥି ପଢ଼ିବା ଅସମ୍ଭବ ହେବ । ଅଥଚ ଏଗୁଡ଼ିକୁ ରଖିଲେ ଚଳନ୍ତି ଭାଷା ପାଇଁ ବହୁତ ସମସ୍ୟା ତିଆରି ହେବ । ଏଥିରୁ ଗୋଟିଏ କଥା ସ୍ପଷ୍ଟ ହେବ ଯେ, ଚଳନ୍ତି ଭାଷା ପାଇଁ ବହୁତ ପ୍ରୟୋଜନ ହେଉଥିବା ବର୍ଣ୍ଣ ଓ ଅକ୍ଷର ପଢେଇ ସାରିଲା ପରେ ପୁରୁଣା ପୋଥି ପଢିବାପାଇଁ ପ୍ରୟୋଜନ ହେଉଥିବା ବର୍ଣ୍ଣ ଓ ଅକ୍ଷର ଗୁଡିକୁ ଶିଖେଇ ଅଭିଧାନର ବର୍ଣ୍ଣକ୍ରମ ସହ ପରିଚିତ କରାଯିବ ।

ଅଭିଧାନକୁ ଦେଖିଲେ ଏଥିରେ ଥିବା ଭିନ୍ନତା ପ୍ରଥମେ ଆଖିରେ ପଡେ । ଅଧିକାଂଶ ଅଭିଧାନ 'କ ଖ' ମଝିରେ 'କ୍ଷ' ଓ 'ଜ' ପରେ 'ଜ୍ଞ' ଦେଉଥିଲେ । ଏହାପରେ ବର୍ଣବୋଧକୁ ଧରି 'ହ' ପରେ 'କ୍ଷ' ଦିଆଗଲା । 'କ୍ଷ' ପାଖରେ 'ଜ୍ଞ' ରହିଲା । ନିର୍ମଳ ଏସବୁ ବିଷୟରେ ସବିଶେଷ ବିଚାର ଆଲୋଚନା

କରିଛନ୍ତି । ସିଏ ବର୍ଣ୍ଣ ଓ ଅକ୍ଷର ବିଷୟରେ ମଧ୍ୟ ଆଲୋଚନା କରିଛନ୍ତି । ବନାନ ବିଷୟରେ ମଧ୍ୟ ଆଲୋଚନା କଲାବେଳେ ତାଙ୍କ ଚାହାଣୀର ସ୍ୱତନ୍ତ୍ରତା ଦେଖିବାକୁ ମିଳେ । ଅକ୍ଷର ସଂଖ୍ୟା ଓ ଅକ୍ଷର କ୍ରମ ବିଷୟରେ ତାଙ୍କର ଆଲୋଚନା ଏସବୁ ବିଷୟକୁ ନୂଆ କରି ଦେଖିବା ପାଇଁ ପ୍ରେରଣା ଯୋଗାଇବ ବୋଲି ମୁଁ ଆଶା କରୁଛି ।

ଲିପି ଭାଷାର ଆତ୍ମା ନୁହେଁ, ପୋଷାକ । ପୃଥିବୀର ସବୁ ଭାଷାକୁ ସବୁ ଲିପିରେ ଲେଖାଯାଇପାରେ । ଗୋଟିଏ ଲିପିରେ ସବୁ ଭାଷାକୁ ମଧ୍ୟ ଲେଖା ଯାଇପାରେ ।  ଭାରତରେ ଅଲିଖିତ ଭାଷା ମାନଙ୍କୁ ଲିପି ଦେବାକୁ ହେଲେ ଆଞ୍ଚଳିକ ଭାଷାର ଲିପିକୁ ବ୍ୟବହାର କରିବା ସବୁ ଦୃଷ୍ଟିରୁ ଭଲ । ବେଳେବେଳେ ସାମାଜିକ ଓ ରାଜନୈତିକ ଦୃଷ୍ଟିରୁ ଏହା ସମ୍ଭବ ନୋହିଲେ, ଏଥିପାଇଁ ଅନ୍ୟ ଗୋଟିଏ ଲିପି ବଛାଯାଇ ପାରେ । ରୋମାନ, ନୂଆ ଆବିଷ୍କୃତ ଲିପି ଓ ପର୍ଶୋଆରବିକ ଲିପିକୁ ଛାଡିଦେଲେ ଭାରତର ଅନ୍ୟସବୁ ଲିପି ଗୋଟିଏ ପରିବାରଭୁକ୍ତ । ଭାଷା ବିକାଶରେ ଲାଗିଥିବା ଲୋକେ ଏହି କଥାଟିକୁ ଭଲ ଭାବରେ ବୁଝିବା ଉଚିତ ।

ନିର୍ମଳଙ୍କର ଏହି ବହିଟି ଅନ୍ୟାନ୍ୟ ସବୁ ବହିଠାରୁ ଭିନ୍ନ । ଏହା ଅଧିକ ଲୋକଙ୍କ ଦ୍ୱାରା ଆଦୃତ ହେଲେ ଓ ଭବିଷ୍ୟତ ଗବେଷଣା ପାଇଁ କାମରେ ଲାଗିଲେ ଲେଖକଙ୍କର ଶ୍ରମ ସାର୍ଥକ ହେବ । ମୋର ଆଶୀର୍ବାଦ ତାଙ୍କ ପାଇଁ ରହିଲା  ।

ଦେବୀପ୍ରସନ୍ନ ପଟ୍ଟନାୟକ

(ଦେବୀ ପ୍ରସନ୍ନ ପଟ୍ଟନାୟକ)

ତା ୧୬.୦୪.୦୫

(ଅଶୋକାଷ୍ଟମୀ)

# ପୂର୍ବାଭାଷ

ଓଡିଆରେ ଅକ୍ଷର ସଂଖ୍ୟା ଓ ଅକ୍ଷରକ୍ରମ ଭିନ୍ନ ଭିନ୍ନ ବହିରେ ଭିନ୍ନ ରୂପେ ଦିଆଯାଇଛି । ଲେଖକ ଏଥିରୁ ମାତ୍ର ୧୬ଟି ପ୍ରକାଶିତ ବର୍ଣ୍ଣବୋଧ ଓ ମଧୁସୂଦନଙ୍କବର୍ଣ୍ଣବୋଧ (ମଧୁବର୍ଣ୍ଣବୋଧ)କୁ ଦେଖିଛନ୍ତି । ଏତଦ୍ ବ୍ୟତୀତ ୩ଟି 'ଚାଟଶାଳୀ ପାଠ', ଓଡିୟା ଭାଷାର ବ୍ୟାକରଣ, ସର୍ବସାର ବ୍ୟାକରଣ, ଓଡ଼ିଆ ବ୍ୟାକରଣ, ୧୯୬୪ ମସିହାରୁ ପ୍ରକାଶିତ 'ଛବିବହି' (ସରକାରୀ), ବେସରକାରୀ ଭାବେ ପ୍ରକାଶିତ କେତେକ ଛବିବହି, ୧୯୮୯ରୁ ପ୍ରଥମଶ୍ରେଣୀରେ ଅକ୍ଷର ଶିକ୍ଷା ପାଇଁ ମୋ. ବହି, ଆମ ବହି (ସରକାରୀ) ବେସରକାରୀ ଉଦ୍ୟମରେ ପ୍ରକାଶିତ 'ମୋ ବହି', ୧୯୯୬ ରୁ ପ୍ରକାଶିତ 'ଆମ ପାଠ ବହି' (ସରକାରୀ ଓ ବେସରକାରୀ), ୨୦୦୧ରେ ପ୍ରକାଶିତ ''ହସଖେଳ'' ବହି ସମେତ ବେସରକାରୀଭାବେ ପ୍ରକାଶିତ ୨୬ ଖଣ୍ଡ ଛବିବହି, ପାଠବହି ଓ ୧୮ ଖଣ୍ଡ ଭାଷା, ବ୍ୟାକରଣ ସଂପର୍କିତ ପୁସ୍ତକ, ଅଭିଧାନ ମଧ୍ୟ ଦେଖିଛନ୍ତି । ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ, ମଧୁସୂଦନ ବର୍ଣ୍ଣବୋଧ ସହିତ ଦେଖିଥିବା ପୁସ୍ତକମାନଙ୍କରେ ବର୍ଣକ୍ରମର ଭିନ୍ନତା ମାତ୍ର ୨୨(ବାଇଶି) ପ୍ରକାର ଅଛି । ସେହି ଭିନ୍ନ ବର୍ଣକ୍ରମକୁ ସ୍ୱର, ଅଯୋଗବାହ ଓ ବ୍ୟଞ୍ଜନ ବର୍ଣ କ୍ରମରେ ଆଲୋଚନା କରିବାକୁ ଉଚିତ ମନେକରିଛନ୍ତି ।

ଓଡିଆ ମାଧ୍ୟମ ବିଦ୍ୟାଳୟ (ରାମକୃଷ୍ଣ ମିଶନ ବିବେକାନନ୍ଦ ମଧ ଇଂରାଜୀ (ଉଚ୍ଚ ପ୍ରାଥମିକ) ବିଦ୍ୟାଳୟ)ରେ ପୁଅ (ଦେବବ୍ରତ)କୁ ୧ମ ଶ୍ରେଣୀରେ ପଢାଇବା ପାଇଁ ଓ ଝିଅ (ମୀରା) କୁ ଅକ୍ଷର ପରିଚୟ ପାଇଁ ୧୯୮୩ ମସିହା ଅପ୍ରେଲ ୧୦ ରୁ ଲେଖକ ଉଦ୍ୟମ ଏ ଯାବତ୍

ଜାରି ରଖିଛନ୍ତି । ନିଜର ମତାମତ ପ୍ରକାଶ କରିବାକୁ ଲେଖକଙ୍କ ଆଗ୍ରହ ସହ "ଶିଶୁ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନ" ଜନ୍ମଲାଭ କରିଛି ।

ଲେଖକଙ୍କର ପିତା ସ୍ୱର୍ଗତ ନରୋତ୍ତମ ମହାନ୍ତି, ସହକାରୀ ଶିକ୍ଷକ, ଅଳକା ଉଚ୍ଚ ବିଦ୍ୟାଳୟ, ବାଲିଆ, ଜଗତ୍‌ସିଂହପୁର ଆରମ୍ଭରୁ ପ୍ରେରଣା ପ୍ରଦାନ କରିଛନ୍ତି । ସେ କହିଥିଲେ - 'ସମ୍ମାନ, ପଦୋନ୍ନତି ପାଇଁ କଦାପି କେଉଁଠି ନିବେଦନ କରିବା ଆବଶ୍ୟକତା ନାହିଁ । ବରଂ ନିଷ୍ଠା ସଫଳତା ଆଣିବାରେ ସହାୟକ ହେବ । କିନ୍ତୁ ପ୍ରାଥମିକ ଶିକ୍ଷା, ଓଡିଆ ମାତୃଭାଷାର ବିକାଶ ପାଇଁ ଅବିଚ୍ଛିନ୍ନ ଉଦ୍ୟମ ଜାରି ରଖିଲେ ପ୍ରଭୁ ଜଗନ୍ନାଥ ଭିନ୍ନ ଭିନ୍ନ ଭାବେ ତତେ ଅନାବିଳ ଭାବେ ସାହାଯ୍ୟ, ସଦିଚ୍ଛା ଦେବେ । କଦାପି ଭାଙ୍ଗି ଯିବୁ ନାହିଁ ।' ଲେଖକ ବାପାଙ୍କ ସେହି କଥାକୁ କେବେ ଭୁଲି ନାହାନ୍ତି ।

୧୯୯୨ ଓ ୧୯୯୩ ମସିହାରେ ଲେଖକ ମାତ୍ର ତିନି ଥର ପ୍ରଫେସର୍ ସ୍ୱର୍ଗତ କୁଞ୍ଜବିହାରୀ ତ୍ରିପାଠୀଙ୍କ ସହିତ କଥାବାର୍ତ୍ତା କରିବାର ସୁଯୋଗ ପାଇଥିଲେ । ଓଡିଆ ବର୍ଣ୍ଣମାଳା ସଂଖ୍ୟା, କ୍ରମ ଓ ଫଳା ସଂବନ୍ଧରେ ଆଲୋଚନା ହୋଇଥିଲା । ଶେଷଦିନ ସ୍ୱର୍ଗତ ତ୍ରିପାଠୀ କହିଥିଲେ, "ନିର୍ମଳ ଏବେ ତୋ କଥା କେହି ଗ୍ରହଣ କରିବେ ନାହିଁ । ମୋ ବଳ ଥିଲେ କିଛି ପରିବର୍ତ୍ତନ କରିବାରେ ସାହାଯ୍ୟ କରିଥାନ୍ତି । କିନ୍ତୁ ହତାଶ ହେବୁ ନାହିଁ । ୧୦ ବର୍ଷ ପରେ ତୋ କଥା କେହି ନା କେହି ଗ୍ରହଣ କରିବେ । ଆଶୀର୍ବାଦ ଦେଉଛି ।" ତାଙ୍କର ଆଶୀର୍ବାଦ ଲେଖକଙ୍କୁ ଅଧିକ ପ୍ରେରଣା ଦେଇଛି ।

ଦୀର୍ଘ ଦିନର ଉଦ୍ୟମକୁ ସାକାର କରି ଲେଖକଙ୍କ ମତାମତକୁ ସମ୍ବାଦପତ୍ର, ପତ୍ରିକା ଓ ପୁସ୍ତକ (ବର୍ଣ୍ଣମାଳା) ଜରିଆରେ ପ୍ରକାଶ କରିବାକୁ ଲଗାତର ଭାବେ ଦିଗ୍ ଦର୍ଶନ ଦେବାରେ ପଦ୍ମଶ୍ରୀ ପ୍ରଫେସର ଶ୍ରୀ ଦେବୀ ପ୍ରସନ୍ନ ପଟ୍ଟନାୟକ, ପ୍ରଫେସର ✓ ବିଧୂ ଭୂଷଣ ଦାସ,

ପ୍ରଫେସର ଶ୍ରୀ ଶତ୍ରୁଘ୍ନ ନାଥ, ପ୍ରଫେସର ଶରତ ଚନ୍ଦ୍ର ଦାଶ, ପ୍ରଫେସର ଶ୍ରୀ ଅବନୀ କୁମାର ବରାଳ, ପ୍ରଫେସର୍ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ଅନାବିଳ ସ୍ନେହ ଓ ପ୍ରେରଣା ଦେଇଛନ୍ତି । ପ୍ରକୃତପକ୍ଷେ ଏହି ବହିକୁ ପ୍ରଫେସର୍ ଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ ସ୍ଥିର ଚିତ୍ତରେ ପଢି ପ୍ରସ୍ତାବ ଦେବା ସହ ପ୍ରକାଶ କରିବାକୁ ଉପଦେଶ ଦେଇଛନ୍ତି । ସେଥିପାଇଁ ପ୍ରକୃତପକ୍ଷେ ଓଡିଆ ବର୍ଣସଂଖ୍ୟା, କ୍ରମର ସଠିକତା ଶ୍ରୀ ପଟ୍ଟନାୟକଙ୍କ ନିରବଚ୍ଛିନ୍ନ ସହଯୋଗ, ପ୍ରେରଣା ଏ ପୁସ୍ତକ ରଚନା କରିବା ପାଇଁ ଉତ୍ସାହିତ କରିଛି । ତେଣୁ ଲେଖକ ଶ୍ରୀ ପଟ୍ଟନାୟକଙ୍କ ନିକଟରେ ଚିର ଋଣୀ । ତେଣୁ ନିଜର ମତାମତ ପ୍ରକାଶ କରିବା ପାଇଁ ଏହି 'ଶିଶୁ ଓଡିଆ ବର୍ଣମାଳା' ପୁସ୍ତକକୁ ମାଧ୍ୟମ ଭାବେ ଗ୍ରହଣ କରିଛନ୍ତି ।

ଏଥିରେ ଲେଖକଙ୍କ ପିତୃତୁଲ୍ୟ, ଭ୍ରାତୃତୁଲ୍ୟ ଶିକ୍ଷା ବିଭାଗର ନିର୍ଦ୍ଦେଶକ, ଦିଗ୍‌ଦର୍ଶକ, ମାଧ୍ୟମିକ ଶିକ୍ଷା ପରିଷଦର ସଭାପତି ଓ ଅନେକ ଶୁଭାକାଙ୍କ୍ଷୀ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଓଡିଆ ବର୍ଣମାଳାର ବର୍ଣସଂଖ୍ୟା ଓ କ୍ରମକୁ ଏକ ସ୍ଥିର ସ୍ଥିତିକୁ ଆଣିବାକୁ ଲେଖକଙ୍କୁ ଅଧିକ ପ୍ରେରଣା ଦେଇଛନ୍ତି । ସେମାନେ ହେଲେ, ପୁରୀ ଗଜପତି ମହାରାଜା ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବ, ଶ୍ରୀମଦ୍ ବାବା ବଳିଆ, ପୂର୍ବତନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ପୂର୍ବତନ ଲୋକସଭା ବାଚସ୍ପତି ଶ୍ରୀ ରବି ରାୟ, ପ୍ରଫେସର ୰ ନଟବର ସାମନ୍ତରାୟ, ପ୍ରଫେସର୍ ୰ ବଂଶୀଧର ମହାନ୍ତି, ପଣ୍ଡିତ ଶ୍ରୀ ପ୍ରବୋଧ ମିଶ୍ର, ପ୍ରଫେସର ଶ୍ରୀ ଖଗେଶ୍ୱର ମହାପାତ୍ର, ପ୍ରଫେସର ଶ୍ରୀ ରଜତ କୁମାର କର, ପ୍ରଫେସର ଶ୍ରୀ ଜଗନ୍ନାଥ ମହାନ୍ତି, ପ୍ରଫେସର ଶ୍ରୀ ନରେନ୍ଦ୍ର ପ୍ରସାଦ ଦାସ୍, ଶ୍ରୀ ନିରଞ୍ଜନ ପାଢୀ, ଆଇ.ଏ.ଏସ୍., ପ୍ରଫେସର୍ ଶ୍ରୀ ପୂର୍ଣ୍ଣଚନ୍ଦ୍ର ରାଉତ, ପ୍ରଫେସର ଶ୍ରୀ ଗଗନେନ୍ଦ୍ର ନାଥ ଦାଶ, ପ୍ରଫେସର ଶ୍ରୀ ଅରବିନ୍ଦ ପଟ୍ଟନାୟକ, ୰ ଦିପ୍ତୀ ପଟ୍ଟନାୟକ, ୰ ଇନ୍ଦ୍ରମଣି ମିଶ୍ର, ଶ୍ରୀ ଶିବରାମ ପଟ୍ଟନାୟକ, ଶ୍ରୀ ପ୍ରମୋଦ କୁମାର ମହାନ୍ତି, ଶ୍ରୀ ରାଜକିଶୋର ମିଶ୍ର, ଶ୍ରୀ ଭାଗ୍ୟଧର ମହାନ୍ତି, ଶ୍ରୀ ଧ୍ରୁବଚରଣ ମିଶ୍ର,

ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ର, ଶ୍ରୀ ରମାକାନ୍ତ ରାଉତ ଓ ଓଡିଶାର ବିଭିନ୍ନ ଶିକ୍ଷକ ସଂଗଠନର କର୍ମକର୍ତ୍ତା, ରାମକୃଷ୍ଣ ମିଶନ ବିବେକାନନ୍ଦ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ସାମନ୍ତରାପୁର ଉନ୍ନୀତ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର କର୍ମକର୍ତ୍ତାବୃନ୍ଦ, ଅନେକ ବୟୋଜ୍ୟେଷ୍ଠ ଓ ଶ୍ରଦ୍ଧେୟ ପ୍ରାଥମିକ ବିଦ୍ୟାଳୟ ଶିକ୍ଷକ। ସେମାନଙ୍କ ଉତ୍ସାହ ଓ ପ୍ରେରଣା ପାଇଁ ଲେଖକ ସେମାନଙ୍କ ନିକଟରେ ଚିର କୃତଜ୍ଞ।

'ସୃଷ୍ଟି' ପ୍ରକାଶନ ସଂସ୍ଥାର ପ୍ରକାଶିକା ଶ୍ରୀମତୀ ସୁନନ୍ଦିତା ମହାନ୍ତି ଲେଖକଙ୍କର ଦୀର୍ଘଦିନର "ଓଡିଆ ଅକ୍ଷର" ସମ୍ବନ୍ଧୀୟ ନିରବଚ୍ଛିନ୍ନ ଉଦ୍ୟମକୁ ସାକାର କରିବା ପାଇଁ କେବଳ ପୁସ୍ତକ ରୂପେ ନୁହେଁ ଏହାସହ ତାସ୍ ଓ ଚାର୍ଟ ପ୍ରକାଶ କରୁଥିବାରୁ ଲେଖକ ତାଙ୍କର ଇଚ୍ଛା ଓ ପ୍ରଚେଷ୍ଟାକୁ କଦାପି ଭୁଲିବେ ନାହିଁ।

ଏଥିପାଇଁ ଶିକ୍ଷକ ସଂଗଠନ, ଶିକ୍ଷା ବିଭାଗ, ଗବେଷକ, ଭାଷାବିତ୍ ମୁଖ୍ୟ ଭୂମିକା ଗ୍ରହଣ କଲେ ଓଡିଆ ବର୍ଣ୍ଣମାଳାର କ୍ରମରେ ଏହି ଭିନ୍ନତା ଆଗାମୀ ଦିନରେ ପ୍ରକାଶିତ ପୁସ୍ତକରେ ଦେଖାଯିବ ନାହିଁ। ବାଇଶି(୨୨) ପାହାଚ ଅତିକ୍ରମ କରି ବର୍ଣ୍ଣ ସଂଖ୍ୟା ଓ କ୍ରମର ବିଧିରେ ସ୍ଥିରତା ଆଣିବାର ଆଶା ରଖି ଓଡିଆ ଠାକୁର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ନିବେଦନ କରି ନିମ୍ନ ବର୍ଣ୍ଣକ୍ରମକୁ ଗ୍ରହଣ କରି ଏ ପୁସ୍ତକକୁ ଲେଖକ ରଚନା କରିଛନ୍ତି।

ଅ ଆ ଇ ଈ ଉ ଊ ଋ ଏ ଐ ଓ ଔ

ଂ ଃ ଁ ୍

କ ଖ ଗ ଘ ଙ ଚ ଛ ଜ ଝ ଞ ଟ ଠ ଡ ଢ ଣ

ତ ଥ ଦ ଧ ନ ପ ଫ ବ ଭ ମ

ଯ ୟ ୱ ର ଳ ଲ ଶ ଷ ସ ହ କ୍ଷ ଜ୍ଞ

# ଶିଶୁ ଓଡିଆ ବର୍ଣମାଳା

ପ୍ରତିପିଲା ଭାଷା ବ୍ୟବହାର କରିବାର ଯୋଗ୍ୟତା ନେଇ ଜନ୍ମ ହୋଇଥାଏ । କିନ୍ତୁ କେଉଁ ଭାଷା ସେ ବ୍ୟବହାର କରିବ ତାହା ତା'ର ସାଂସ୍କୃତିକ ପରିବେଶ ଉପରେ ନିର୍ଭର କରେ । ୪ ବର୍ଷ ବେଳକୁ ପିଲା ପରିବାର, ପରିବେଶ ସହ ସମ୍ପର୍କରେ ଆସି ମାତୃଭାଷାର ବ୍ୟାକରଣ ଆୟତ୍ତ କରିଥାଏ । ପରିବେଶ ସହ ପରିଚିତ ହେବା, ୦ାର କିମ୍ବା ଗୋଟିଏ ଅକ୍ଷର ଦା, ବା, ମା, ପା, ନାଁ କହିବାରୁ ଆରମ୍ଭ କରିଥାଏ । ପରେ ପାପା, ମାମା, ଭାଇ, ବୋଉ ଆଦି ଶବ୍ଦ, ଖଣ୍ଡବାକ୍ୟ, କଷ୍ଟ ଶବ୍ଦ ସହ ବାକ୍ୟ ମଧ୍ୟ ବ୍ୟବହାର କରିଥାଏ । ବିଦ୍ୟାଳୟରେ ପାଠ ପଢିବାକୁ ଆରମ୍ଭ କରିବା ପୂର୍ବରୁ ଓଡିଆ ଅକ୍ଷର ସହ ପରିଚୟ ଓ ପରେ ପଢିବା ପାଇଁ ଶିକ୍ଷା ଦିଆଯାଏ । ଓଡିଆ ଅକ୍ଷର ଚିହ୍ନିବା, ଶବ୍ଦ ପଢିବା, ଶବ୍ଦର ଅର୍ଥ ଜାଣିବା ଉପରେ ଗୁରୁତ୍ୱ ଦିଆଯାଇଥାଏ । ଅକ୍ଷର ଚିହ୍ନିବା, ପଢିବା ପୂର୍ବରୁ ଅକ୍ଷର ମଡାଇ ମଡାଇ ଶିଖାଇବା ଉପରେ ଗୁରୁତ୍ୱ ଦେବାକୁ ଅଧିକାଂଶ ପସନ୍ଦ କରନ୍ତି । ଅକ୍ଷର ସୁନ୍ଦର, ଶବ୍ଦର ବନାନ ଠିକ୍ ହୋଇଥାଏ କି ନାହିଁ ଶିକ୍ଷାଦାତା ଜାଣନ୍ତି । ଅକ୍ଷର ଚିହ୍ନିବା, କ୍ରମ ଜାଣିବା ଓ କ୍ରମକୁ ଭିତ୍ତିକରି ଅଭିଧାନରେ ଶବ୍ଦ ଖୋଜିବା, ଅଧିକ ଶବ୍ଦ ଶିଖିବା "ଅକ୍ଷର ଶିକ୍ଷା"ର ମୂଳ ଲକ୍ଷ୍ୟ । ଏ ଯାବତ୍ ଓଡିଆର ବର୍ଣ କ୍ରମରେ ସ୍ଥିରତା ଆସିନାହିଁ । ବର୍ଣମାଳା ଓ ଅଭିଧାନ ପରସ୍ପର

ସହ ସମ୍ପର୍କିତ । ଆବଶ୍ୟକତାକୁ ଦୃଷ୍ଟିରେ ରଖି 'ଶିଶୁ ଓଡିଆ ବର୍ଣମାଳା' ପ୍ରକାଶ ନିମିତ୍ତ ଲେଖକ ଆଗ୍ରହ ପ୍ରକାଶ କରିଛନ୍ତି ।

ପୁସ୍ତକର ନାମକରଣ 'ଶିଶୁ ଓଡ଼ିଆ ବର୍ଣ୍ଣମାଳା' ପରିବର୍ତେ 'ଶିଶୁ ଓଡିଆ ବର୍ଣମାଳା' ଲେଖିବାରେ ଅଶାନ୍ତି ଆସିପାରେ । ଶବ୍ଦର ଆଦ୍ୟ ଅକ୍ଷର ଡ,ଢ ଏବଂ ମଧ୍ୟ କିମ୍ବା ଅନ୍ତରେ ଥିବା ଡ,ଢ ର ଉଚ୍ଚାରଣରେ ଭିନ୍ନତା ଅଛି । ଓଡିଆ ମାତୃଭାଷାଭାଷୀ ପିଲାମାନେ ଏହା ଜାଣନ୍ତି । ତାଙ୍କ ପାଇଁ ଡ,ଢ ତଳେ ବିନ୍ଦୁ ଦେଇ ଚିହ୍ନାଇବାର ଆବଶ୍ୟକତା ନାହିଁ । ବରଂ ଓଡିଆକୁ ଦ୍ୱିତୀୟ ଭାଷା କିମ୍ବା ବିଦେଶୀ ଭାଷା ରୂପେ ଶିଖୁଥିବା ଲୋକଙ୍କପାଇଁ ଏହାର ଉଚ୍ଚାରଣ ଶିଖିବାର ଆବଶ୍ୟକତା ଅଛି । ଏପରି ବିଦେଶୀ ଶବ୍ଦ ମାନଙ୍କରେ 'R' ଥିବାରୁ ଆମେ ଓଡିଆରେ ଅର୍ଡର ଓ କାର୍ଡ ଲେଖୁଥାଉ । କିନ୍ତୁ ଉଚ୍ଚାରଣକୁ ଦେଖିଲେ ଏହାର ଆବଶ୍ୟକତା ନାହିଁ ।

ଯେପରି 'କଟକ, ସଉକ, ଭୁଲ' ଶବ୍ଦକୁ ଉଚ୍ଚାରଣ କଲାବେଳେ ଓଡିଆ ଲୋକମାନେ ମଧ୍ଯ ଶବ୍ଦର ଶେଷ ଅକ୍ଷର 'କ, ଲ'ରେ ହଳନ୍ତ ଯୁକ୍ତ କରିଥାନ୍ତି । କିନ୍ତୁ ଲେଖିବାବେଳ ହଳନ୍ତ ଲେଖାଯାଇନଥାଏ । ସେପରି 'କାନି' ଓ 'କାନ୍ତ' ରେ ବର୍ତ୍ସ୍ୟ ଓ ଦନ୍ତ୍ୟ 'ନ' ପାଇଁ ଗୋଟିଏ ରୂପର 'ନ' ବ୍ୟବହାର ହୋଇଥାଏ । ତେଣୁ ଡ ଢ ପାଇଁ ଦୁଇଟି ରୂପ ଗ୍ରହଣୀୟ ନୁହେଁ ।

ରେଫ (ˊ) ହେତୁ ସଂସ୍କୃତ ନିୟମ ଅନୁସାରେ ଯେଉଁ ଅକ୍ଷରରେ ରେଫ (ˊ) ଯୋଗ କରାଯାଏ, ସେହି ଅକ୍ଷର ଦ୍ୱିତ୍ୱ ରୂପରେ ପରିବର୍ତିତ ହୋଇଥାଏ । ପ୍ରକୃତରେ ସବୁ ରେଫ (ˊ) ଯୁକ୍ତ ଯୁକ୍ତାକ୍ଷରରେ ଦ୍ୱିତ୍ୱ ଅକ୍ଷର ଦେଖାଯାଏ ନାହିଁ । ଯଥା- କର୍ମ, ସର୍ପ, ଗର୍ବ, ସ୍ୱର୍ଗ, ଅର୍ଥ, ମୁର୍ଖ, ଅର୍ଘ, ଗର୍ଜନ ଇତ୍ୟାଦି । କିନ୍ତୁ କେତେକ କ୍ଷେତ୍ରରେ ଲେଖାରେ ଦ୍ୱିତ୍ୱ ରୂପ ଥାଏ । ଯଥା - ବର୍ତ୍ତମାନ୍, ସର୍ତ୍ତ, ବର୍ତ୍ତ, କର୍ତ୍ତ, ଅର୍ଚ୍ଚନା,

ନିର୍ଦ୍ଦେଶ, ନିର୍ଦ୍ଧାରଣ । ଓଡିଆ ଉଚ୍ଚାରଣରେ ଏହି ଦ୍ୱିତ୍ୱ ନ ଥିବାରୁ ଏଠି ମଧ୍ଧ ଏହା ରହିବାର ପ୍ରୟୋଜନ ନାହିଁ । କିନ୍ତୁ ଲେଖନର ଏହି ବିଭ୍ରାଟ ଆଉ କିଛି କାଳ ରହିବା ପରି ମନେହୁଏ । ଯାହା ହେଲେ ମଧ୍ଧ ଉଚ୍ଚାରଣ ତଥା ଆବଶ୍ୟକତାକୁ ଦୃଷ୍ଟିରେ ରଖି ଅଯଥାରେ ବର୍ଣର ଦ୍ୱିତ୍ୱ ବିଧି ପାଳନ କରିବା ଉଚିତ ନୁହେଁ । ସେଥିପାଇଁ 'ଶିଶୁ ଓଡ଼ିଆ ବର୍ଣ୍ଣମାଳା' 'ଶିଶୁ ଓଡିଆ ବର୍ଣମାଳା'- ଭାବେ ପୁସ୍ତକର ନାମ କରଣ କରାଯାଇଛି ।

୰ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଦ୍ୱାରା ଲିଖିତ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ"ର ଅକ୍ଷରକ୍ରମ ଠାରୁ ୰ ମଧୁସୂଦନ ରାଓଙ୍କ ଦ୍ୱାରା ଲିଖିତ 'ବର୍ଣ୍ଣବୋଧ'ର ବର୍ଣମାଳାର କ୍ରମ ଭିନ୍ନ ।

ଭାଷାକୋଷର ଅକ୍ଷର କ୍ରମ – ଅ ଆ ଇ ଈ ଉ ଊ ଋ ୠ ଌ ୡ ଏ ଐ ଓ ଔ ଂ ଃ ଁ କ କ୍ଷ ଖ ଗ ଘ ଙ ଚ ଛ ଜ (ଜ୍ଞ) ଝ ଞ ଟ ଠ ଡ ଡ଼ ଢ ଢ଼ ଣ ତ ଥ ଦ ଧ ନ ପ ଫ ବ ଭ ମ ଯ ୟ ର ଳ ଲ ୱ ଶ ଷ ସ ହ ।

ମଧୁସୂଦନ ବର୍ଣ୍ଣବୋଧର ବର୍ଣ୍ଣକ୍ରମ – ଅ ଆ ଇ ଈ ଉ ଊ ଋ ୠ ଏ ଐ ଓ ଔ କ ଖ ଗ ଘ ଙ ଚ ଛ ଜ ଝ ଞ ଟ ଠ ଡ ଢ ଣ ତ ଥ ଦ ଧ ନ ପ ଫ ବ ଭ ମ ଯ ର ଳ ବ ଶ ଷ ସ ହ କ୍ଷ ଡ଼ ଢ଼ ୟ ଲ ଂ ଃ ଁ ।

ଅକ୍ଷର ଚିହ୍ନିବା, କ୍ରମ ଜାଣିବା ଓ ଏ କ୍ରମ ଶିକ୍ଷା ଫଳରେ ଅଭିଧାନର ଶବ୍ଦ ଖୋଜିବା ସହଜ ହେବ । ଏ କଥା ଉପରେ ଏ ଯାବତ୍ ସଂଖ୍ୟାଧିକ ଓଡିଆ ବ୍ୟାକରଣକାର ୰ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷର କ୍ରମକୁ ଗ୍ରହଣ କରିବାକୁ ଉଚିତ ମନେକଲେ ନାହିଁ । ତେବେ ମଧୁସୂଦନଙ୍କ ବର୍ଣ୍ଣମାଳାଟିକୁ ଅନ୍ତତଃ ଗ୍ରହଣ କରିପାରିଥାନ୍ତେ । ତା ମଧ୍ୟ ହେଲା ନାହିଁ । ସ୍ୱରବର୍ଣ ଓ ଅଯୋଗବାହ ବର୍ଣର କ୍ରମ,

ପରିବର୍ତ୍ତନ ହୋଇନାହିଁ । କେବଳ ବର୍ଗ୍ୟ ବ୍ୟଞ୍ଜନବର୍ଣ୍ଣରେ ଥିବା ବର୍ଣ୍ଣ ଗୁଡ଼ିକର କ୍ରମ ଭିନ୍ନ ଭିନ୍ନ ବହି ଅନୁସାରେ ଭିନ୍ନ ଭିନ୍ନ କ୍ରମରେ ରଖାଯାଇଛି ।

**ସ୍ୱରବର୍ଣ୍ଣ -**

ଓଡିଆ ବର୍ଣ୍ଣମାଳା ଓ ଲିପିମାଳାରେ କ୍ରମର ଭିନ୍ନତା ନାହିଁ । କିନ୍ତୁ ସଂଖ୍ୟା ସର୍ବାଧିକ ୧୪ (ଚଉଦ) ଥିବାବେଳେ ସର୍ବନିମ୍ନ ୫ (ପାଂଚ) ଥିବା ଦେଖାଯାଏ ।

୧. ଅ ଆ ଇ ଈ ଉ ଊ ଋ ୠ ଌ ୡ ଏ ଐ ଓ ଔ - (୧୪) ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ, ଓଡିୟା ଭାଷାର ବ୍ୟାକରଣ, ଛାତ୍ର ମଧୁ ବର୍ଣ୍ଣବୋଧ (ଌ ୡ ର ରୂପ ꣁ ꣁ ଅଛି), ଶ୍ରୀରାମ ଶିଶୁ ଛବି ବହି ।

୨. ଅ ଆ ଇ ଈ ଉ ଊ ଋ ୠ ଌ ଏ ଐ ଓ ଔ - (୧୩) ଆମ ଛବି ବହି, ବର୍ଣ୍ଣ ବୋଧ - ୨ୟ ଭାଗ, ନୂତନ ଛବି ବହି, ଆଦର୍ଶ ମଧୁବର୍ଣ୍ଣବୋଧ, ସରସ ମଧୁବର୍ଣ୍ଣବୋଧ, ମଧୁବର୍ଣ୍ଣବୋଧ, ଚାଟଶାଳୀପାଠ ।

୩.କ) ଅ ଆ ଇ ଈ ଉ ଊ ଋ ଌ ଏ ଐ ଓ ଔ - (୧୨) ତ୍ରିଭାଷୀ ।

ଖ) ଅ ଆ ଇ ଈ ଉ ଊ ଋ ୠ ଏ ଐ ଓ ଔ - (୧୨) ମଧୁସୂଦନ ଗ୍ରନ୍ଥାବଳୀ (ମଧୁସୂଦନଙ୍କ ବର୍ଣ୍ଣବୋଧ), ଛବି ବହି ୧ମ ଭାଗ (୧୯୮୫), ପିଲାଙ୍କ ଛବି ବହି - ୧ମ ଭାଗ, ପିଲାଙ୍କ ଅକ୍ଷର ଶିକ୍ଷା, ନୂତନ ଛବି ବହି, ଆଦର୍ଶ ଛବି ବହି, ଛବି ବହି - ୧ମ ଭାଗ (MBD), ମୋର ଛବି ବହି, ନୂଆ ଛବି ବହି, ଆମ ଛବି ବହି, ବିଚିତ୍ର ଛବି ବହି, ଶିଶୁ ଛବି ବହି, ସରସ ମୋ ଛବି ବହି, ପିଲାଙ୍କ ଭାଷା ଓ ସାହିତ୍ୟ - ୧ମ ଭାଗ (୨୦୦୦),

ଆମ ଭାଷା ଦୁନିଆଁ (୨୦୦୪), ସରସ୍ୱତୀ ମୋ ଛବି ବହି, ଆଦର୍ଶ ମଧୁ ବର୍ଣ୍ଣବୋଧ, ଶ୍ରୀ ସାଇ ଛବିଳ ମଧୁ ବର୍ଣ୍ଣବୋଧ, ସାଥୀ ବର୍ଣ୍ଣବୋଧ, ପିଲାଙ୍କ ମଧୁ ବର୍ଣ୍ଣବୋଧ, ମଧୁ ବର୍ଣ୍ଣ ବୋଧ, ସଚିତ୍ର ବର୍ଣ୍ଣବୋଧ, ସହଜ ମଧୁ ବର୍ଣ୍ଣବୋଧ (ସାଥୀ ବର୍ଣ୍ଣବୋଧ) ।

୪. ଅ ଆ ଇ ଈ ଉ ଊ ଋ ଏ ଐ ଓ ଔ - (୧୧) ଆମ ଗାଁ ପାଠ, ମୋ ବହି (୧୯୮୯ ରୁ ୧୯୯୫), ଆମ ପାଠବହି (୧୯୯୬ ରୁ ୧୯୯୯), ଓଡ଼ିଆ ବ୍ୟାକରଣ (୨୦୦୦), ହସ ଖେଳ (୨୦୦୧), ଛାତ୍ର ମୋ ବହି, ନୂଆ ଛବି ବହି (TBW), ଅରୋ ଛବିଳ ଅଆ... କଖ ପରିଚୟ - ପ୍ରଥମଭାଗ ।

୫. ଅ ଇ ଉ ଏ ଓ - (୫) ଓଡ଼ିଆ ଭାଷାତତ୍ତ୍ୱ ଓ ଲିପିର ବିକାଶ, ରାଜ୍ୟ ସଂଗ୍ରହାଳୟର ବର୍ଣ୍ଣମାଳା ଓ ଆଧୁନିକ ଓଡ଼ିଆ ଲିପିମାଳା ।

'ସର୍ବସାର ବ୍ୟାକରଣ'ରେ 'ଆ ଈ ଊ ଋ ଏ ଐ ଓ ଔ' କୁ ଦୀର୍ଘସ୍ୱର, 'ଓଡିଆ ବ୍ୟାକରଣ'ରେ 'ଆ ଈ ଊ' କୁ ଦୀର୍ଘସ୍ୱର ଅନ୍ତର୍ଭୁକ୍ତ କରାଯାଇଛି । କିନ୍ତୁ ପ୍ରକୃତ ପକ୍ଷେ 'ଆ' 'ଅ'ର ଦୀର୍ଘ ସ୍ୱର ନୁହେଁ । 'ଋ' କୁ ରୁ ରୂପେ ଲେଖା ହେଉଥିବାରୁ ଏହା ଶୁଦ୍ଧ ସ୍ୱର ହୋଇନଥିବାରୁ ଏହାକୁ ଶୁଦ୍ଧ ସ୍ୱର ମଧ୍ୟରେ ନ ରଖିବାକୁ କେହିକେହି କହିଛନ୍ତି । ଭାଷା ଇତିହାସରୁ ଦେଖାଯିବ ଯେ ଋ ବଙ୍ଗଳାରେ ରି, ଓଡିଆରେ ରୁ, ବୁନ୍ଦେଲଖଣ୍ଡ ଅଞ୍ଚଳରେ ଅର୍ ରୂପେ ବିକଶିତ ହୋଇଥିବାରୁ ଅକ୍ଷର ତାଲିକାରେ ଏହାକୁ ରଖିବାର କାରଣ ନାହିଁ । କିନ୍ତୁ ଋଷି, ଋଣ ପରି ଶବ୍ଦମାନଙ୍କରେ ଋ ଲେଖା ଯାଉଥିବାରୁ ଏଠାରେ ଏହାକୁ ସ୍ୱରବର୍ଣ୍ଣ ତାଲିକାରେ ରଖାଯାଇଛି । 'ଅ, ଇ, ଉ' ପରି 'ଆ, ଏ, ଓ' କୁ ହ୍ରସ୍ୱ ସ୍ୱର ମଧ୍ୟରେ ରଖିବା ଠିକ୍ ହେବ ।

ଋ (ଦୀର୍ଘ ଋ) କାର ଅନ୍ୟ ସ୍ୱରବର୍ଣ୍ଣ ପରି ବ୍ୟବହୃତ ହୁଏ ନାହିଁ (ପିତୄଣ ପରିବର୍ତ୍ତେ ପିତୃରଣ ଲେଖାଯାଏ) । କିମ୍ବା 'ଋ' କୌଣସି ଶବ୍ଦରେ ବ୍ୟବହାର ହୋଇ ନଥାଏ । ମଧୁସୂଦନ ବର୍ଣ୍ଣବୋଧକୁ ଅନୁକରଣ କରି ସରକାରୀ ବହିରେ 'ଋ' ନଥିଲେ ମଧ, ସରସ୍ୱତୀ ମୋ ଛବି ବହି, ମୋ ଛବି ବହି, ସନ୍ୟାସୀ ମଧୁବର୍ଣ୍ଣବୋଧ, ସଚିତ୍ର ମଧୁବର୍ଣ୍ଣବୋଧ, ଚାଟଶାଳୀ ପାଠ ଆଦି ବେସରକାରୀ ବହିରେ 'ଋ'କୁ ସ୍ୱର ବର୍ଣରେ ରଖାଯାଇଛି । ତେଣୁ ଏହାକୁ ବାଦ୍ ଦେବା ଠିକ୍ ହେବ ।

ଉନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଌ ୡ ବର୍ଣମାଳାରେ ଥିଲା । କିନ୍ତୁ ଅନାବଶ୍ୟକ ହେତୁ ୡ କୁ ବାଦ୍ ଦେଇ ଌ ରଖାଗଲା । କିନ୍ତୁ କ + ଌ କାର = କ୍ଳୃ ପରିବର୍ତ୍ତେ କ + ଳ ଫଳା + ଉ କାର ବ୍ୟବହାର ହେବାରୁ ଌ କୁ ବାଦ ଦିଆଗଲା । ଏହି 'ଌ ୡ'ର ବ୍ୟବହାର କିମ୍ବା ଆବଶ୍ୟକତା ନାହିଁ ବୋଲି 'ଭାଷାକୋଷ'ରେ ଉଲ୍ଲେଖ ଅଛି । ସରକାରୀ ବହିରେ ନଥିଲେ ମଧ ବେସରକାରୀ ଛବିବହି, ବର୍ଣ୍ଣବୋଧରେ ଯଥା - ନୂତନ ଛବିବହି, ଆଦର୍ଶ ମଧୁବର୍ଣ୍ଣବୋଧ, ସରସ ମଧୁବର୍ଣ୍ଣବୋଧରେ ସ୍ୱରବର୍ଣରେ 'ୡ' କୁ ବାଦ୍ କରି କେବଳ 'ଌ' କୁ ରଖାଯାଇଛି । କିନ୍ତୁ ଏହାକୁ ରଖାଯିବାର ଯଥାର୍ଥତା ନାହିଁ ।

'ଐ, ଔ' ଦୁଇଟି ସନ୍ଧ୍ୟକ୍ଷର ହେଲେ ମଧ ହ୍ରସ୍ୱ, ଦୀର୍ଘ ସ୍ୱରକୁ ବିଚାର କରି 'ଏ ଐ ଓ ଔ' କ୍ରମରେ ରଖାଯାଇଛି । ଐ, ଔ ର ବିକଳ୍ପ ରୂପ ଅଇ, ଅଉ ଗ୍ରହଣ କରିବା ପାଇଁ ବିଚାର କରିବା, ଯଥା - କୈ(କଇ)ଶୋର, ଔ(ଅଉ)ଷଧ ।

**ଅଯୋଗବାହବର୍ଣ** - ଂ, ଃ, ଁ କୁ ସ୍ୱର କିମ୍ବା ବ୍ୟଞ୍ଜନ ବର୍ଣଭାବେ ଗ୍ରହଣ ନ କରି ଅଯୋଗବାହ ବର୍ଣ ଭାବେ ବର୍ଣମାଳାରେ ଗ୍ରହଣ କରାଯାଇଛି । ସ୍ୱତନ୍ତ୍ର ଅକ୍ଷରଭାବେ ଅନୁସ୍ୱାର (ଂ), ବିସର୍ଗ(ଃ),

ଚନ୍ଦ୍ରବିନ୍ଦୁ ( ँ ) ବ୍ୟବହାର ହେଉନଥିଲେ ମଧ୍ୟ ସ୍ୱର, ବ୍ୟଞ୍ଜନ ବର୍ଣର ସୂଚକ 'ମାତ୍ରା' କିମ୍ବା 'ଫଳା' ଭାବେ ଯୋଗ ନ ହୋଇ ଅକ୍ଷୁଣ୍ଣ ଭାବେ ସ୍ୱର ଓ ବ୍ୟଞ୍ଜନ ବର୍ଣ ସହ ଯୋଗହୋଇ ଶବ୍ଦ ଗଠନ କରେ (ହଂସ, ଦୁଃଖୀ, କଇଁ) । ସ୍ୱରବର୍ଣ୍ଣ 'ଷୋଡଶ' ଓ ବ୍ୟଞ୍ଜନବର୍ଣ 'ଚଉତିଶା' ସ୍ୱର ଓ ବ୍ୟଞ୍ଜନ ସଂଖ୍ୟାକୁ ଭିତ୍ତିକରି ଗ୍ରହଣ କରାଯାଇଥିଲା । ସ୍ୱରବର୍ଣରେ ଋ, ଌ, ୡ ସହିତ ଅନୁସ୍ୱାର (ଂ), ଓ ବିସର୍ଗ (ଃ) କୁ ଯୋଗକରି ସଂଖ୍ୟା ୧୬ ଥିଲା । ଉଚ୍ଚାରଣକୁ ଦୃଷ୍ଟିରେ ରଖି ଏହା ସହିତ ଚନ୍ଦ୍ରବିନ୍ଦୁ ( ँ )କୁ ଯୋଗ କରାଗଲା । ମନେ ରଖିବାକୁ ହେବ ଯେ ଚନ୍ଦ୍ରବିନ୍ଦୁ ( ँ ) ସ୍ୱରର ଅନୁନାସିକ ଓ ଅନୁସ୍ୱାର (ଂ) ବ୍ୟଞ୍ଜନ ଅନୁନାସିକ । ଅଂଶ, ହଂସ ପରି ଶବ୍ଦକୁ ଏହାର ବ୍ୟତିକ୍ରମ ରୂପେ ଧରାଯାଇପାରେ । ଅନ୍ୟପକ୍ଷରେ ବ୍ୟଞ୍ଜନର ଅନୁନାସିକ ଅନୁସ୍ୱାର (ଂ) କୁ ଂ+ବ୍ୟଞ୍ଜନଭାବେ ଲେଖା ଯାଉଥିବାରୁ ଅଂଶରେ ଂ+ଶକୁ ଏହି ପର୍ଯ୍ୟାୟର ବୋଲି ଗଣାଯାଇପାରେ ।

ଭିନ୍ନ ଭିନ୍ନ ବହିର ବର୍ଣମାଳାକୁ ଦେଖିଲେ ' ଂ ଃ ँ ' ର କ୍ରମରେ ଭିନ୍ନତା ଆସିନାହିଁ କିନ୍ତୁ ସ୍ଥାନ ଦେଖିଲେ ଅନୁମାନ କରିହେବ । ଏ ତିନୋଟି ସ୍ୱର କିମ୍ବା ବ୍ୟଞ୍ଜନ ବର୍ଣ ହୋଇ ନଥିଲେ ମଧ୍ୟ ଆବଶ୍ୟକତା ଦୃଷ୍ଟିରୁ ଏହାର କ୍ରମରେ ସ୍ଥାନ କଥା ବିଚାର ହୋଇ ନାହିଁ । ତେଣୁ ସେଥିପାଇଁ ଏହାକୁ ସ୍ୱର ବର୍ଣ କିମ୍ବା ଅବର୍ଗ୍ୟ ବ୍ୟଞ୍ଜନ ବର୍ଣ ଶେଷରେ ନ ରଖି ଏହାପରେ ମଧ୍ୟ ବର୍ଣ ରଖାଯାଇଛି । ଯଥା -

୧. ଂ ଃ ँ – ମୋ ବହି, ୧୯୮୯

୨. ଂ ଃ ँ ୍ – ଆମ ପାଠ ବହି, ୧୯୯୬

୩. ଂ ଃ ँ କ୍ଷ – ମୋ ଛବି ବହି, ସନ୍ୟାସୀ ବର୍ଣ୍ଣବୋଧ

୪. ଂ ଃ ँ ଯ ଳ କ୍ଷ – ମୋ ବହି, ୧୯୯୧

୫. ଂ ଃ ଁ ଯ ଳ କ୍ଷ ଡ଼ ଢ଼ – ମୋ ବହି, ୧୯୯୪

୬. ଂ ଃ ଁ – ଅତିରିକ୍ତ ବର୍ଣ୍ଣ, ଡ଼ ଢ଼ – ଆଦର୍ଶ ମଧୁ ବର୍ଣ୍ଣବୋଧ

୭. ଂ ଃ ଁ – ଅତିରିକ୍ତ ବର୍ଣ୍ଣ – ଡ଼ ଢ଼ ଯ ଳ, ସଚିତ୍ର ବର୍ଣ୍ଣବୋଧ

୮. ଂ ଃ ଁ – ଅତିରିକ୍ତ ବର୍ଣ୍ଣ – କ୍ଷ ଡ଼ ଢ଼ ଯ ଳ, ଛବିଳ ମଧୁ ବର୍ଣ୍ଣବୋଧ

୯. ଂ ଃ ଁ – ଅତିରିକ୍ତ ବର୍ଣ୍ଣ – ଡ଼ ଢ଼ ଯ ଳ କ୍ଷ, ସରସ ମଧୁବର୍ଣ୍ଣବୋଧ

୧୦. ଅତିରିକ୍ତ ବର୍ଣ୍ଣ – କ୍ଷ ଡ଼ ଢ଼ ଯ ଳ ଂ ଃ ଁ – ସରସ ଚାଟଶାଳୀ ପାଠ

ଓଡିଆରେ ଶବ୍ଦରେ ହଳନ୍ତ ( ୍ ) ଯୋଗ ହୋଇନଥାଏ । କଥା କହିବାପରେ ପିଲାମାନେ ହଳନ୍ତ ଯୁକ୍ତ ଶବ୍ଦ କହନ୍ତି, ବୁଝନ୍ତି । ଯଥା- ଇସ୍, ଠକ୍, ବଲ୍, ଟେବୁଲ୍, ପେନ୍ ଇତ୍ୟାଦି । କିନ୍ତୁ ଛାପାକଳ (କମ୍ପ୍ୟୁଟର)ରେ ଯୁକ୍ତାକ୍ଷରରେ ହଳନ୍ତ ଯୋଗକରି ଲେଖାଯାଉଛି । ଓଡିଆକୁ ଅନ୍ୟଭାଷା ରୂପେ ଶିଖି ବ୍ୟବହାର କରିବା ପାଇଁ ଉଚ୍ଚାରଣ ଦୃଷ୍ଟିରୁ ହଳନ୍ତ ( ୍ ) ଯୋଗ କରାଯାଉଛି । ଯଥା - କମ୍, କମ, ଚକ୍, ଚକ ଠକ୍, ଠକ, ବୁଟ, ବୁଟ୍ । ଏ ହଳନ୍ତ ଯୋଗ ଦ୍ୱାରା ଶବ୍ଦର ଅର୍ଥ ପାର୍ଥକ୍ୟ ସୂଚାଇ ଦିଆଯାଉଛି । ଏହି ଅଯୋଗବାହ ବର୍ଣ ସଂଖ୍ୟା ତିନିରୁ ଚାରି (ଂ, ଃ, ଁ, ୍ ) ହୋଇଛି । ଯାହା ଆମ ପାଠବହି - ୧୯୯୬, ପିଲାଙ୍କ ଭାଷା ଓ ସାହିତ୍ୟ ୨୦୦୦, ହସଖେଳ-୨୦୦୧, ସରସ ମୋ ଛବି ବହି- ପ୍ରଥମଭାଗ ଓ ଆମ ଛବିବହିର ବର୍ଣମାଳାରେ ରଖାଯାଇଛି ।

ହଳନ୍ତ ସ୍ୱର ବର୍ଣରେ ଯୁକ୍ତ ହୋଇନଥାଏ । ଅଭିଧାନରେ ହଳନ୍ତ ଯୋଗ ହୋଇଥିବା ଶବ୍ଦଟି ଆଗରେ ଥିବା ବେଳେ ହଳନ୍ତ ବିନା ଅକ୍ଷରଟି

ଥିବା ଶବ୍ଦଟି ପରେ ରହିଥାଏ (ଚକ୍, ଚକ)। ହଳନ୍ତ ଶବ୍ଦର ଶେଷ ଅକ୍ଷରରେ ଯୋଗ ହୋଇଥାଏ (ଫୋନ୍, ପେନ୍, ଟେବୁଲ୍) କିମ୍ବା ( ୍ ) ଶବ୍ଦ ଆଦ୍ୟ ଓ ମଧ୍ୟରେ ଯୋଗହେଲେ ମଧ୍ୟ (ସ୍ଖଳନ, ଉଦ୍‌ଘାଟନ, ପେନ୍‌ସିଲ୍) ହଳନ୍ତକୁ ବ୍ୟବହାର କରିବା ପାଇଁ ଶବ୍ଦରେ ଯୁକ୍ତାକ୍ଷରକୁ ବାଦ୍ ଦେବା ଠିକ୍ ନୁହେଁ। ବରଂ ଯୁକ୍ତାକ୍ଷର ଗଠନର ସାଧାରଣ ବିଧି ମାନିଲେ ଠିକ୍ ହେବ। ଏହି ସାଧାରଣ ବିଧି ହେଉଛି ଯେ ଶବ୍ଦର ଆରମ୍ଭରେ ଥିବା ଯୁକ୍ତାକ୍ଷରକୁ ହଳନ୍ତ ଦେଇ ଲେଖାଯାଏ ନାହିଁ। ଏ ବିଧିର ସଂଶୋଧନ ପାଇଁ ବିଚାର କରିବାର ବେଳ ଆସିଛି।

ଗୋଟିଏ ଅକ୍ଷରରେ ଦୁଇଟି ଫଳା ଯୋଗହୋଇପାରେ (ନିଷ୍କ୍ରିୟ, ସ୍ୱାତନ୍ତ୍ର୍ୟ)। କିନ୍ତୁ ଗୋଟିଏ ଅକ୍ଷରରେ ୨ଟି ମାତ୍ରା କିମ୍ବା ୨ଟି ଅଯୋଗବାହ ଅକ୍ଷର ଯୋଗ ହୋଇନପାରେ (ଯଥା- କ୍ୱାଇଁଙ୍କ ଘର, କ୍ୱାଇଁଂକ ଘର)। ତେଣୁ ପ୍ରାଧାନ୍ୟକୁ ଦୃଷ୍ଟିରେ ରଖି ସ୍ୱର ଅଯୋଗବାହ ଓ ବ୍ୟଞ୍ଜନବର୍ଣ୍ଣ ବର୍ଣ୍ଣକ୍ରମରେ ରଖିବା ଠିକ୍। ଭାଷା କୋଷକୁ ଲକ୍ଷ୍ୟକଲେ ସ୍ୱର, ଅଯୋଗବାହ ଓ ବ୍ୟଞ୍ଜନ ବର୍ଣ୍ଣର କ୍ରମ ସହଜରେ ଜାଣିହେବ ଯଥା - ଅରଣୀ, ଅଏସିଆ, ଅଂକ, ଅଂଶ, ଅଂଶପ୍ରାର୍ଥୀ, ଅଂଶବଂଶ, ଅଂଶବାଉଁଶ, ଅଂଶାଅଂଶ, ଅଂଶାଇ, ଦୁଇ, ଦୁଃ, ଦୁଃଖ, ଦୁଆ, ଦୁଆଁ, ଦୁଆତ, ସତ୍, ସତ୍‌କର୍ମ, ସତ୍‌ପଥ, ସତ୍‌ସେବା, ସତ, ସତକଥା। ତେଣୁ ଅଭିଧାନର କ୍ରମରେ ଶବ୍ଦଗଠନ ପ୍ରତି ଦୃଷ୍ଟି ରଖି ସ୍ୱରବର୍ଣ୍ଣ ପରେ 'ଂ ଃ ଁ ୍' କୁ 'ଶିଶୁ ଓଡିଆ ବର୍ଣ୍ଣମାଳା' ପୁସ୍ତକର ବର୍ଣ୍ଣମାଳାରେ ରଖାଯାଇଛି।

**ବ୍ୟଞ୍ଜନ ବର୍ଣ୍ଣ -**

ଯେଉଁ ବ୍ୟଞ୍ଜନ ତଳେ ରେଖା (ହଳନ୍ତ) ଥାଏ, ସେ ବ୍ୟଞ୍ଜନରେ ଅ-କାର ନ ଥାଏ। ଅ-କାର ଆପଣା ସ୍ୱଭାବରେ ପ୍ରତି ବ୍ୟଞ୍ଜନରେ

ଥାଏ । ଏହି ହେତୁରୁ ତାହାର ବିଶେଷ ଚିହ୍ନ ନାହିଁ । ବରଂ ବ୍ୟଞ୍ଜନ ବର୍ଣ୍ଣ ଅକ୍ଷରରେ ପରିଚିତ ହୁଏ । ଏହି ଅକ୍ଷରକୁ ଅବନାକ୍ଷର କୁହାଯାଏ ।

ବ୍ୟଞ୍ଜନବର୍ଣ୍ଣକୁ ୨ ଭାଗରେ ମୁଖ୍ୟତଃ ବିଭକ୍ତ କରାଯାଇଛି - (୧) ବର୍ଗ୍ୟ ବ୍ୟଞ୍ଜନ, (୨) ଅବର୍ଗ୍ୟ ବ୍ୟଞ୍ଜନ ବର୍ଣ୍ଣ ।

**ବର୍ଗ୍ୟ ବ୍ୟଞ୍ଜନ ବର୍ଣ୍ଣ -**

ଉଚ୍ଚାରଣ ଦୃଷ୍ଟିରୁ ୨୫ଟି ବର୍ଗ୍ୟ ବର୍ଣ୍ଣକୁ ୫ଟି ବର୍ଗରେ ବିଭକ୍ତ କରି ନିମ୍ନ କ୍ରମ ଅନୁସାରେ ରଖାଯାଇଥାଏ ।

କ - ବର୍ଗ - କଖଗଘଙ

ଚ - ବର୍ଗ - ଚଛଜଝଞ

ଟ - ବର୍ଗ - ଟଠଡଢଣ

ତ - ବର୍ଗ - ତଥଦଧନ

ପ - ବର୍ଗ - ପଫବଭମ

ମଧୁସୂଦନଙ୍କ ବର୍ଣ୍ଣବୋଧରେ ବର୍ଗ୍ୟବ୍ୟଞ୍ଜନ ବର୍ଣ୍ଣ କ୍ରମ ଓ ସଂଖ୍ୟା ସମାନ (୨୫) ଥିବାବେଳେ ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ଶବ୍ଦ ଉଚ୍ଚାରଣକୁ ଦୃଷ୍ଟିରେ ରଖି ବ୍ୟବହୃତ ବର୍ଣ୍ଣମାନଙ୍କରେ ପରିଚୟ କ୍ରମରେ ବ୍ୟଞ୍ଜନ ବର୍ଣ୍ଣ କ- ମ ମଧ୍ୟରେ କିଛି ଅକ୍ଷର ଯୋଗ ହୋଇଛି । 'କ,ଖ' ମଝିରେ 'କ୍ଷ', ଓ 'ଡ' ପରେ 'ଡ଼', 'ଢ' ପରେ 'ଢ଼' ରହିଥାଏ । ଏପରିକି ଚ଼ (ତଳେ ବିନ୍ଦୁ ଥିବା ଚ) ବର୍ଣ୍ଣ କ୍ରମରେ ନଥିଲେ ମଧ୍ୟ ଶବ୍ଦରେ (ପାଠ୍ୟପୁସ୍ତକ, ଦୂରଦର୍ଶନରେ) ବ୍ୟବହାର କରାଯାଏ । ସେଥିପାଇଁ ଚ଼,ଡ଼,ଢ଼ ବିଷୟରେ ଆଲୋଚନା କରିବାକୁ ଲେଖକ ଉଚିତ ମନେକରନ୍ତି ।

କିନ୍ତୁ କେତେକ ବହିରେ ଏହାର କ୍ରମ ଭିନ୍ନ ଭିନ୍ନ ହୋଇଥାଏ । ଯଥା -

୧. କ କ୍ଷ ଖ ଗ ଘ ଙ ଚ ଛ ଜ ଝ ଞ ଟ ଠ ଡ ଡ଼ ଢ ଢ଼ ଣ ତ ଥ ଦ ଧ ନ ପ ଫ ବ ଭ ମ (୨୮)- ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ, ସରଳ ଓଡ଼ିଆ ଅଭିଧାନ (ଡ଼, ଢ଼ - କୌଣସି ଶବ୍ଦର ଆଦ୍ୟ ବର୍ଣ୍ଣ ହୋଇ ଅଭିଧାନରେ ନାହିଁ) ।

୨. କ ଖ ଗ ଘ ଙ ଚ ଛ ଜ ଝ ଞ ଟ ଠ ଡ ଡ଼ ଢ ଢ଼ ଣ ତ ଥ ଦ ଧ ନ ପ ଫ ବ ଭ ମ (୨୭) — ଆମ ପାଠ ବହି -୧୯୯୬ ।

୩. କ ଖ ଗ ଘ ଙ ଚ ଛ ଜ ଝ ଞ ଟ ଠ ଡ ଢ ଣ ତ ଥ ଦ ଧ ନ ପ ଫ ବ ଭ ମ (୨୪)- ମଧୁସୂଦନଙ୍କ ବର୍ଣ୍ଣବୋଧ ।

ପ୍ରକୃତ ପକ୍ଷେ 'ଚ' ତଳେ ବିନ୍ଦୁ ରହି 'ଚ଼' ଦୁଇଟି ବହିର ବର୍ଣମାଳା ମଧ୍ୟରେ ଅଛି । 'ଛାତ୍ର ମୋ ବହି' ବର୍ଣମାଳାର ଶେଷରେ 'ଡ଼ ଢ଼ ଚ଼' ଥିବା ବେଳେ ଅଜନ୍ତା ବର୍ଣ୍ଣବୋଧ-୨ୟ ଭାଗର ଅତିରିକ୍ତ ବର୍ଣରେ 'ଚ଼ ଡ଼ ଢ଼'କୁ ଗ୍ରହଣ କରାଯାଇଛି । 'ଚ଼ ଡ଼ ଢ଼'ର ବିକଳ୍ପରୂପକୁ 'ଶିଶୁଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନ' ବିରୋଧ କରିଚାଲିଛି ।

ଆମ ବହି (ଓଡ଼ିଶା ସରକାର - ୧୯୯୨) କହିଲେ ଚ, ଚା, ଚି, ଚୁ, ଚୋ କ୍ଷେତ୍ରରେ ବିନ୍ଦୁ ବ୍ୟବହାର ହୋଇଛି । ଯଥା ଚ଼ଞ୍ଚଳିଆ, ବିଚ଼ରା, (ପୃ-୫୩,୫୬), ଚ଼ାନ୍ଦ (ପୃ-୨୬), ଚ଼ିଲିକା, ଚ଼ିଲ (ପୃ-୪୯,୫୮), ଖେଚୁଡ଼ି (ପୃ-୫୭) । କିନ୍ତୁ ଚାନ୍ଦ (ପୃ-୨୮), ଚିଲ (ପୃ-୫୭) ରେ ବ୍ୟବହାର ହୋଇନାହିଁ । ତେଣୁ ଏହା ଚ ତଳେ ବିନ୍ଦୁର ବିଧି ନୁହେଁ । 'ଚ' 'ଚ଼' ଦୁଇଟି ଅକ୍ଷର ଥିବାରୁ ଏ ଭୁଲ ହୋଇଛି ଓ ଏହାକୁ ଛାପାହେବା ପୂର୍ବରୁ ସଂଶୋଧିତ ହୋଇପାରିନାହିଁ । କୋମଳମତି ପିଲାମାନଙ୍କୁ ଏପରି ଭାବେ ଶିକ୍ଷା ଦେବାରେ କେତେ ଅସୁବିଧା ଶିକ୍ଷାଦାତା ବୁଝିପାରୁଥିବେ ।

ଏପରିକି ଚ଼ନ୍ଦ୍ର, ଚ଼ରଣ, ରାମଚ଼ନ୍ଦ୍ର, ଉଚ୍ଚ଼ାରଣ, ହରିଶ୍ଚ଼ନ୍ଦ୍ର ପରି ବ୍ୟବହୃତ ଶବ୍ଦରେ ପାଠ୍ୟ ପୁସ୍ତକର 'ଚ' ତଳେ ବିନ୍ଦୁ ଦିଆଯାଇଥାଏ ।

ଏହା ମଧ୍ୟ ଲେଖନରେ ବ୍ୟବହାର କରାଯାଇଥାଏ । ଚ ରେ ବିନ୍ଦୁ ଦେଇ 'ଢ଼' ଲେଖିବାର ଯୁକ୍ତି ଯୁକ୍ତତା ନାହିଁ ।

'ଚ'ସହିତ ଆକାର ଯୋଗ କଲାବେଳେ ତରତରରୁ ହେଉ କିମ୍ବା ଭୁଲବଶତ ହେଉ ଏହା ଗ ସାଙ୍ଗରେ ମିଶିଯାଏ । 'ଚା'ର ଭ୍ରମ ହେବାର ସମ୍ଭାବନା ଥିବାରୁ 'ଚ'ରେ କେହି କେହି ବିନ୍ଦୁ ଦେଇ 'ଢ଼ା' ଲେଖନ୍ତି ଅକ୍ଷର ସହ ମାତ୍ରାକୁ ଯୋଗ କଲାବେଳେ ଅକ୍ଷରର ରୂପକୁ ବିରୂପ କରିବା ଆବଶ୍ୟକତା ନାହିଁ । ସେଥିପାଇଁ 'ଆକାର' 'ଭ,ର,ଲ'ରେ ବିକଳ୍ପ ଭାବେ ଯୋଗକରି ଭା,ରା,ଲା, ପରିବର୍ତ୍ତେ ଭ୍‌, ର୍‌, ଲ୍‌ ଲେଖା ହୁଏ । ସେହି ପରି 'ଚ+ଆ = ଚା' ନ ଲେଖି ବିକଳ୍ପ ଭାବେ 'ଢ଼ା', 'ଚ୍‌' ଲେଖିବାର ଆବଶ୍ୟକତା ପଡନ୍ତା ନାହିଁ । ସେ ଦୃଷ୍ଟିରୁ କେବଳ ଚ୍‌ (ଚା) କୁ ଭିନ୍ନ ରୂପରେ ଲେଖିବାକୁ ଏ ବହିରେ ବିକଳ୍ପ ଭାବେ ଗ୍ରହଣ କରାଯାଇଛି । କିନ୍ତୁ ଭ, ର, ଲ କ୍ଷେତ୍ରରେ ବିକଳ୍ପ ରୂପ ଗ୍ରହଣ କରିବା ଠିକ୍ ହେବ ନାହିଁ ।

କିନ୍ତୁ ଦୂରଦର୍ଶନ ସଂସ୍ଥା ଶବ୍ଦର ଆଦ୍ୟ କିମ୍ବା ଅନ୍ୟସ୍ଥାନରେ ଚ ପରି ଡ, ଢ ତଳେ ବିନ୍ଦୁ ଦେବାକୁ ଭୁଲିନାହିଁ ବରଂ ଚ, ଡ, ଢ ଏହି ବିକଳ୍ପ ରୂପପ୍ରତି ଆକର୍ଷଣ ବୃଦ୍ଧି କରିବାରେ ତତ୍ପରତା ପ୍ରକାଶ କରିଛି । ଶବ୍ଦର ଆଦ୍ୟରେ ଡ, ଢ ଓ ମଝିରେ, ଶେଷରେ ଡ,ଢ ଉଚ୍ଚାରଣ ବିଧି ଓଡିଆରେ ବାଦ ଦିଆଯାଇପାରେ।କିନ୍ତୁ ଶବ୍ଦର ଆରମ୍ଭରେ ଡ,ଢ ତଳେ ବିନ୍ଦୁ ଦେବା ଅସଙ୍ଗତ ।

ଡ଼ଢ଼ (ତଳେ ବିନ୍ଦୁ ଥିବା ଡ, ଢ) ବର୍ଗ୍ୟ ବ୍ୟଞ୍ଜନ ବର୍ଣ୍ଣ ମଧ୍ୟରେ ନ ରହି ଅବର୍ଗ୍ୟ ବ୍ୟଞ୍ଜନ ବର୍ଣ୍ଣ ଏପରିକି ଅତିରିକ୍ତ ବର୍ଣ୍ଣ ମଧ୍ୟରେ ଥିବାର ଦେଖାଯାଏ । ଭିନ୍ନ ଭିନ୍ନ ଛବିବହି, ବର୍ଣ୍ଣବୋଧରେ କ୍ରମ ଦୃଷ୍ଟିରୁ ବିଚାର କଲେ ୬ ପ୍ରକାର କ୍ରମରେ ଥାଏ । ଏପରିକି ଏହା ବର୍ଣ୍ଣମାଳା ମଧ୍ୟରେ ନ ରହି ଅତିରିକ୍ତ ବର୍ଣ୍ଣଭାବେ ୬ ପ୍ରକାର କ୍ରମରେ ଅଛି । ଏ ୧୨

ପ୍ରକାର କ୍ରମକୁ ବିଚାର କଲେ "ଡ଼ ଢ଼ ଯ ଲ ହ କ୍ଷ"ର ସ୍ଥାନ ପରିବର୍ତ୍ତନ ଘଟିଥାଏ । ଯଥା -

୧. ହ କ୍ଷ ଡ଼ ଢ଼ ଯ ଲ - ମଧୁସୂଦନଙ୍କ ବର୍ଣ୍ଣବୋଧ, ପିଲାଙ୍କ ମଧୁବର୍ଣ୍ଣବୋଧ, ପିଲାଙ୍କ ଛବିବହି - ୧ମ ଭାଗ, ଛବି ବହି -୧ମ ଭାଗ (MBD), ଶିଶୁ ଛବି ବହି, ସରସ ଛବି ବହି, ଅରୋ ଓଡିଆ ଶବ୍ଦମାଳା, ସରସ ମଧୁବର୍ଣ୍ଣବୋଧ (ଓଡ଼ିଶା ଜଗନ୍ନାଥ କମ୍ପାନୀ) ।

୨. ହ ଡ଼ ଢ଼ ଯ ଲ କ୍ଷ - ଆମ ପାଠ ବହି - ୧ମ ଭାଗ - ୧୯୯୩ ।

୩. ହ ଂ ଃ ଁ ଯ ଲ କ୍ଷ ଡ଼ ଢ଼ - ମୋ ବହି - ୧୯୯୪, କେ.ବି.ଡ଼ି. ପାଠ ବହି ।

୪. ହ କ୍ଷ ଯ ଲ ଡ଼ ଢ଼ ଂ ଃ ଁ ୍ - ଆମ ପାଠ ବହି ୧୯୯୯ ପିଲାଙ୍କ ଭାଷା ଓ ସାହିତ୍ୟ - ୨୦୦୦, ହସ ଖେଳ- ୨୦୦୧ ସରସ ମୋ ଛବି ବହି (୧ମ ଭାଗ) , ଆମ ଛବି ବହି, ଆମ ଭାଷା ଦୁନିଆଁ - ୨୦୦୪ ।

୫. ହ ଡ଼ ଢ଼ ଯ ଲ ଂ ଃ ଁ କ୍ଷ - ମୋ ଛବିବହି ସନ୍ୟାସୀ ମଧୁ ବର୍ଣ୍ଣବୋଧ, ମଧୁ ବର୍ଣ୍ଣବୋଧ, ସହଜ ମଧୁ ବର୍ଣ୍ଣବୋଧ (ସାଥୀ ବର୍ଣ୍ଣବୋଧ) ।

୬. ହ କ୍ଷ ଯ ଲ ଡ଼ ଢ଼ ଚ଼ - ଛାତ୍ର ମୋ ବହି ।

୭. ହ କ୍ଷ ଂ ଃ ଁ - ଅତିରିକ୍ତ ବର୍ଣ୍ଣ - ଚ଼ ଡ଼ ଢ଼ - ବର୍ଣ୍ଣବୋଧ - ୨ୟଭାଗ (ଅଜନ୍ତା ପବ୍ଲିକେଶନ୍) ।

୮. ହ କ୍ଷ ଂ ଃ ଁ - ଅତିରିକ୍ତ ବର୍ଣ୍ଣ - ଡ଼ ଢ଼ - ଆଦର୍ଶ ମଧୁ ବର୍ଣ୍ଣବୋଧ ।

୯. ହ ଂ ଃ ଁ - ଅତିରିକ୍ତ ବର୍ଣ୍ଣ - କ୍ଷ ଡ଼ ଢ଼ ଯ ଲ - ଛବିଳ ମଧୁ ବର୍ଣ୍ଣବୋଧ, ଛାତ୍ର ମଧୁ ବର୍ଣ୍ଣବୋଧ, ନୂତନ ଛବି ବହି ।

୧୦. ହ କ୍ଷ ଂ ଃ ଁ - ଅତିରିକ୍ତ ବର୍ଣ୍ଣ - ଡ଼ ଢ଼ ଯ ଲ - ସଚିତ୍ର ବର୍ଣ୍ଣବୋଧ ।

୧୧. ହ ଂ ଃ ଁ - ଅତିରିକ୍ତ ବର୍ଣ୍ଣ - ଡ଼ ଢ଼ ୟ ଲ କ୍ଷ - ସରସ ମଧୁ ବର୍ଣ୍ଣବୋଧ (ସନ୍ନ୍ୟାସୀ ପୁସ୍ତକାଳୟ) ଛବିକ ଚାଟଶାଳୀ ପାଠ, ପିଲାଙ୍କ ଚାଟଶାଳୀ ପାଠ ।

୧୨. ହ - ଅତିରିକ୍ତ ବର୍ଣ୍ଣ - କ୍ଷ ଡ଼ ଢ଼ ୟ ଲ ଂ ଃ ଁ - ସରସ ଚାଟଶାଳୀ ପାଠ ।

ଅବଶ୍ୟ ଅକ୍ଷର ପରିଚୟ ପାଇଁ ଛବିବହି ପ୍ରଥମଭାଗ - ୧୯୮୫, 'ଡ,ଢ' ପାଇଁ କଢ଼, ପଇଡ଼, ମୋ ବହି - ୧୯୮୯ ଡ,ଢ ପାଇଁ ଶଗଡ଼, କଢ଼ ଛବି ଥିଲା । ଡ,ଢ ଚିହ୍ନାଇବା ପରିବର୍ତ୍ତେ ଡ,ଢ ତଳେ ବିନ୍ଦୁ ଦିଆଯାଇ ଶଗଡ଼, କଢ଼ ଲେଖାଯାଇଥିଲା । ମୋ ବହି - ୧୯୯୪ ରେ ଏହାର ସଂଶୋଧନ ଅଣାଯାଇ 'ଡ,ଡ଼' ପାଇଁ 'ଶଗଡ଼, ଡାଳ' ଓ 'ଢ,ଢ଼' ପାଇଁ 'କଢ଼, ଢାଲ'ର ଛବି ଜରିଆରେ ଅକ୍ଷର ପରିଚୟ କରାଯାଇଛି । ଏଥିରେ ଦିଆଯାଇଥିବା ଅକ୍ଷରକ୍ରମ ଛବିର କ୍ରମ ସହିତ ସମାନ ନୁହେଁ । ସବୁ ନୂଆ ଅକ୍ଷର ପାଇଁ ଲାଲ ରଂଗ ଦିଆଯାଇଛି । କିନ୍ତୁ ଅକ୍ଷର ପରିଚୟରେ ଡାଳ, ଢାଲରେ 'ଡ,ଢ' ଅକ୍ଷର ପରିଚୟ ପାଇଁ ଲାଲରଂଗ ଦିଆଯାଇନାହିଁ । ଅବଶ୍ୟ ଆମ ପାଠ ବହି-୧୯୯୬ ରେ ଏହାର ସଂଶୋଧନ ଅଣାଯାଇଛି । 'ଡ,ଡ଼'ର ବ୍ୟବହାର ପାଇଁ (ପାଠ ୧୧ ରେ)ସୂଚନା ଶିକ୍ଷକଙ୍କ ପାଇଁ ଦିଆଯାଇ ଥିଲେ ମଧ୍ୟ ପାଠ-୧୫ରେ ଢ ଢ଼ ପାଇଁ ସୂଚନା ଦିଆଯାଇନାହିଁ । ଏହା ଚଳିତ ଚିନ୍ତାର ବିଶୃଙ୍ଖଳା ହେତୁ ଘଟୁଛି । 'ଆମ ବହି' ୫୬ ପୃଷ୍ଠାର ଡ଼ିଆଁ ଓ 'ଅଜନ୍ତା ମୋର ବହି' ୩୩ ପୃଷ୍ଠାର 'ଡ଼ଗର' ଶବ୍ଦରେ 'ଡ' ତଳେ ବିନ୍ଦୁ ଦିଆଯାଇଛି । ଏହା ଓଡିଆ କଥନ, ପଠନ ଓ ଲେଖନ ନିୟମର ବିରୋଧି ।

'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରେ ଡଡ଼ ଓ ଢଢ଼ ଥିବା ବେଳେ ଭାଷାକୋଷକୁ ଲକ୍ଷ୍ୟକରି ଆମପାଠ ବହି-୧୯୯୬ ବର୍ଣ୍ଣକ୍ରମରେ

ରଖାଯାଇଛି । ଯେହେତୁ ଡ଼,ଢ଼ ଆଦ୍ୟ ବର୍ଣ୍ଣ ନୁହେଁ ଏହା ଭାଷା କୋଷରେ ବିଘ୍ନ ଘଟାଇବ ନାହିଁ । ବରଂ 'ଚ଼,ଡ଼,ଢ଼' କୁ ବାଦ୍ ଦେଇ ଚ,ଡ,ଢ କୁ ବ୍ୟବହାର କରିବା ଉଚିତ ମନେକରି 'ଶିଶୁ ଓଡିଆ ବର୍ଣମାଳା' ବହିର ବର୍ଣକ୍ରମରେ ରଖାଯାଇଛି ।

କ-ବର୍ଗର 'ଙ' ଓ ଚ-ବର୍ଗର 'ଞ' କୁ ଶବ୍ଦର ଆଦ୍ୟରେ ବ୍ୟବହୃତ ହୋଇନଥାଏ । ଆକାଙ୍କ୍ଷା, ଯାଚ୍ଞା ପରି ଯେଉଁ ଶବ୍ଦରେ ବ୍ୟବହୃତ ହୁଏ ତାହା ପିଲାଙ୍କର ଆବଶ୍ୟକ, ବୋଧଗମ୍ୟ ଶବ୍ଦ ନୁହେଁ । ତେଣୁ 'କ' ଠାରୁ 'ମ' ପର୍ଯ୍ୟନ୍ତ ମଧୁସୂଦନଙ୍କ ବର୍ଣମାଳା କ୍ରମକୁ 'ଶିଶୁ ଓଡିଆ ବର୍ଣମାଳା' ପୁସ୍ତକରେ ରଖାଯାଇଛି ।

**ଅବର୍ଗ୍ୟ ବ୍ୟଞ୍ଜନ ବର୍ଣ -**

ଅବର୍ଗ୍ୟ ବ୍ୟଞ୍ଜନବର୍ଣ ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ 'ଯ ୟ ର ଳ ଲ ଓ୍ ଶ ଷ ସ ହ' ଥିବା ବେଳେ ମଧୁସୂଦନଙ୍କ ବର୍ଣବୋଧରେ 'ଯ ର ଳ ବ ଶ ଷ ସ ହ କ୍ଷ ଡ଼ ଢ଼ ୟ ଲ ଂ ଃ ँ' ବର୍ଣମାଳାରେ ରହିଛି । 'ଡ଼ ଢ଼ ଂ ଃ ँ' ବର୍ଣକଥା ପୂର୍ବରୁ ଆଲୋଚିତ ହୋଇଛି ।

ଭିନ୍ନ ଭିନ୍ନ ବହିରେ ବର୍ଣ୍ଣ ମଧ୍ୟରେ (୧) ଶ ଷ ସ (ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ) କ୍ରମ ବଦଳି ଶ ସ ଷ (ଆମ ଭାଷା ଦୁନିଆଁ), ସ ଶ ଷ (ଅଜନ୍ତା ବର୍ଣ୍ଣବୋଧ) ହୋଇଥିବା ବେଳେ (୨) ୟ ଲ କ୍ଷ (ମୋ ବହି, ଆମ ପାଠ ବହି - ୧୯୯୩), କ୍ରମରେ ପରିବର୍ତ୍ତନ ହୋଇ, କ୍ଷ ୟ ଲ (ଆମ ପାଠ ବହି - ୧୯୯୬) ଓ କ୍ଷ ଲ ୟ (ସରସ୍ୱତୀ ମୋ ଛବିବହି), ଏବଂ (୩) କେଉଁ ବହିରେ ଏହି ବର୍ଣ ମଧ୍ୟରେ ହ, 'କ୍ଷ' ର କ୍ରମରେ ଭିନ୍ନତା ଥିବାବେଳେ କେଉଁ ବହିରେ ରଖାଯାଇ ନାହିଁ । ଏହି କ୍ରମର ପରିବର୍ତ୍ତନ କେବଳ ଅବର୍ଗ୍ୟ ବ୍ୟଞ୍ଜନ

ବର୍ଣ୍ଣକ୍ରମରେ ଆସି ନଥାଏ । ଏହି ବର୍ଣ୍ଣମଧ୍ୟରେ ଥିବା ଅଯୋଗବାହ ବର୍ଣ୍ଣ 'ଂ ଃ ଁ ୍' ଓ ଡ଼ଢ଼ଚ଼ (ଚ଼ଡ଼ଢ଼)ର ସ୍ଥାନ ମଧ୍ୟ ପରିବର୍ତ୍ତନ ପ୍ରକ୍ରିୟାରେ ଭାଗୀ ହୋଇଥାଏ । ଏହାର ଭିନ୍ନ ଭିନ୍ନ ବହିର କ୍ରମକୁ ଲକ୍ଷ୍ୟ କରି ଏହି କ୍ରମର ସଂଖ୍ୟା ୨୨ ହେବ । ବହୁ ବେସରକାରୀ ବହିର ପ୍ରକାଶନ ବର୍ଷର ସୂଚନା ନଥିବାରୁ ବର୍ଷ ଅନୁସାରେ କ୍ରମରେ ସୂଚନା ଦେବା ସମ୍ଭବ ନୁହେଁ ।

୧. ଯ ୟ ର ଳ ଲ ୱ ଶ ଷ ସ ହ - ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ

୨. ଯ ର ଳ ବ ଶ ଷ ସ ହ କ୍ଷ ଡ଼ ଢ଼ ୟ ଲ ଂ ଃ ଁ - ମଧୁସୂଦନଙ୍କ ବର୍ଣ୍ଣବୋଧ, ବର୍ଣ୍ଣବୋଧ, ସରସ ମଧୁ ବର୍ଣ୍ଣବୋଧ, ପିଲାଙ୍କ ମଧୁବର୍ଣ୍ଣବୋଧ, ପିଲାଙ୍କ ଛବିବହି - ୧ମ ଭାଗ, ଛବି ବହି - ୧ମ ଭାଗ (MBD), ଶିଶୁ ଛବି ବହି, ସରସ ଛବି ବହି, ଅରୋ ଓଡିଆ ଶବ୍ଦମାଳା ।

୩. ଯୟରଳଲଶଷସହକ୍ଷ - ଛବି ବହି - ୧ମ ଭାଗ (୧୯୮୫) ୧ମ ଶ୍ରେଣୀ ପିଲାଙ୍କ, ଛବି ବହି, ଆଦର୍ଶ ଛବି ବହି, ଶ୍ରୀରାମ ଛବିବହି ।

୪. ଯ ୟ ର ଳ ଲ ୱ ଶ ଷ ସ ହ କ୍ଷ ଂ ଃ ଁ - ମୋ ବହି - ୧୯୮୯ ।

୫. ଯ ର ଳ ୱ ଶ ଷ ସ ହ ଂ ଃ ଁ ୟ ଲ କ୍ଷ - ମୋ ବହି - ୧୯୯୧

୬. ଯ ର ଳ ବ ଶ ଷ ସ ହ ଡ଼ ଢ଼ ୟ ଲ କ୍ଷ ଂ ଃ ଁ - ଆମ ପାଠ ବହି - ୧ମ ଭାଗ - ୧୯୯୩ ।

୭. ଯ ର ଳ ୱ ଶ ଷ ସ ହ ଂ ଃ ଁ ୟ ଲ କ୍ଷ ଡ଼ ଢ଼ - ମୋ ବହି - ୧୯୯୪, କେ.ବି.ଡ଼ି. ପାଠ ବହି ।

୮. ଯ ର ଳ ୱ ଶ ଷ ସ ହ କ୍ଷ ୟ ଲ ଂ ଃ ଁ ୍ - ଆମ ପାଠ ବହି -୧୯୯୬ ।

୯. ଯ ର ଲ ଓ୍ୱ ଶ ଷ ସ ହ କ୍ଷ ୟ ଳ ଡ଼ ଢ଼ ° ଃ ଁ ୍ - ଆମ ପାଠ ବହି-୧୯୯୯ ପିଲାଙ୍କ ଭାଷା ଓ ସାହିତ୍ୟ-୨୦୦୦, ହସ ଖେଳ- ୨୦୦୧ ସରସ ମୋ ଛବି ବହି (୧ମ ଭାଗ) , ଆମ ଛବି ବହି ।

୧୦. ଯ ୟ ର ଲ ଳ ଓ୍ୱ ଶ୍ର ଷ ସ ହ ° ଃ ଁ - ଓଡ଼ିଆ ବ୍ୟାକରଣ - ୨୦୦୦ ।

୧୧. ଯ ୟ ର ଲ ଳ ଓ୍ୱ ଶ ଷ ସ ହ କ୍ଷ ଞ୍ଚ - ସରଳ ଓଡ଼ିଆ ଅଭିଧାନ - ୨୦୦୪ ।

୧୨. ଯ ର ଲ ବ ଶ ଷ ସ ହ ଡ଼ ଢ଼ ୟ ଳ ° ଃ ଁ କ୍ଷ - ମୋ ଛବିବହି, ସନ୍ୟାସୀ ମଧୁ ବର୍ଣ୍ଣବୋଧ, ମଧୁବର୍ଣ୍ଣବୋଧ, ସହଜ ମଧୁ ବର୍ଣ୍ଣବୋଧ (ସାଥୀ ବର୍ଣ୍ଣବୋଧ) ।

୧୩. ଯ ର ଲ ବ ଶ ଷ ସ ହ କ୍ଷ ଳ ୟ ° ଃ ଁ - ସରସ୍ୱତୀ ମୋ ଛବି ବହି ।

୧୪. ଯ ର ଲ ବ ଶ ଷ ସ ହ କ୍ଷ ° ଃ ଁ - ତ୍ରିଭାଷୀ ।

୧୫. ଯ ର ଲ ବ ଶ ଷ ସ ହ କ୍ଷ ୟ ଳ ° ଃ ଁ - ଅରୋ ଛବିଳ ଅ ଆ-କ ଖ ପରିଚୟ (୧ମ ଭାଗ) ।

୧୬. ଯ ର ଲ ଓ୍ୱ ଶ ଷ ସ ହ କ୍ଷ ୟ ଳ ଡ଼ ଢ଼ ଚ଼ - ଛାତ୍ର ମୋ ବହି ।

୧୭. ଯ ର ଲ ବ ଶ ଷ ସ ହ କ୍ଷ ଡ଼ ଢ଼ ୟ ଳ ° ଃ ଁ - ସରସ ମଧୁବର୍ଣ୍ଣବୋଧ (ଓଡ଼ିଶା ଜଗନ୍ନାଥ କଂପାନୀ)

୧୮. ଯ ୟ ର ଲ ଳ ବ/ଓ୍ୱ ଶ ଷ ସ ହ କ୍ଷ ° ଃ ଁ - ଅତିରିକ୍ତ ବର୍ଣ୍ଣ - ଡ଼ଢ଼ - ଆଦର୍ଶ ମଧୁବର୍ଣ୍ଣବୋଧ

୧୯. ଯ ର ଲ ବ(ଓ୍ୱ) ଶ ଷ ସ ହ ° ଃ ଁ - ଅତିରିକ୍ତ ବର୍ଣ୍ଣ- କ୍ଷ ଡ଼ ଢ଼ ୟ ଳ -ଛବିଳ ମଧୁବର୍ଣ୍ଣବୋଧ, ଛାତ୍ର ମଧୁବର୍ଣ୍ଣବୋଧ, ନୂତନ ଛବି ବହି ।

୨୦. ଯ ର ଲ ୱ ଶ ଷ ସ ହ କ୍ଷ ং ঃ ँ - ଅତିରିକ୍ତ ବର୍ଣ୍ଣ - ଡ଼ ଢ଼ ୟ ଳ
- ସଚିତ୍ର ବର୍ଣ୍ଣବୋଧ

୨୧. ଯ ର ଳ ବ ଶ ଷ ସ ହ ং ঃ ँ - ଅତିରିକ୍ତ ବର୍ଣ୍ଣ - ଡ଼ ଢ଼ ୟ ଲ କ୍ଷ
- ସରସ ମଧୁବର୍ଣ୍ଣବୋଧ (ସନ୍ନ୍ୟାସୀ ପୁସ୍ତକାଳୟ) ଛବିଳ ଚାଟଶାଳୀ ପାଠ, ପିଲାଙ୍କ ଚାଟଶାଳୀପାଠ ।

୨୨. ଯ ର ଲ ୱ ଶ ଷ ସ ହ - ଅତିରିକ୍ତ ବର୍ଣ୍ଣ - କ୍ଷ ଡ଼ ଢ଼ ୟ ଳ ং ঃ ँ
ସରସ ଚାଟଶାଳୀ ପାଠ ।

ଐ (ଅଇ), ଔ (ଅଉ) ସ୍ୱରବର୍ଣରେ ଥିବା ବେଳେ ଙ(ଉଅଁ), ଞ(ଇଅଁ) ବର୍ଗ୍ୟ ବ୍ୟଞ୍ଜନ ବର୍ଣରେ ଅଛି । 'ଏ,ଓ' ହ୍ରସ୍ୱ ଏବଂ ଐ,ଔ ସନ୍ଧ୍ୟସ୍ୱର ବା ଯୁକ୍ତସ୍ୱର । ବର୍ଗ୍ୟବର୍ଣର ଉଚ୍ଚାରଣ ଅନୁସାରେ କ-ବର୍ଗରେ 'ଙ', ଚ-ବର୍ଗରେ 'ଞ' ଥାଏ ।

କିନ୍ତୁ ୟ (ଇଅ), ୱ (ଉଅ), ଅବର୍ଗ୍ୟ ବ୍ୟଞ୍ଜନ ବର୍ଣରେ ଅଛି । ବାୟୁପ୍ରବାହର ଅବିଚ୍ଛିନ୍ନ ଗତିଦ୍ୱାରା ସୃଷ୍ଟଧ୍ୱନିକୁ ପ୍ରବାହଧ୍ୱନି କୁହାଯାଏ । ଓଡିଆରେ ୟ,ୱ ଏହାର ଉଦାହରଣ (ଓଡିଆ ଭାଷା ଓ ଭାଷା ବିଜ୍ଞାନ) । ତେଣୁ ୟ, ୱ ଦୁଇଟି ଅବର୍ଗ୍ୟ ଅର୍ଦ୍ଧସ୍ୱର ବ୍ୟଞ୍ଜନ ହେତୁ ଏକାଠି ୟ, ୱ ଭାବେ କ୍ରମରେ ରହିବା ଠିକ୍ ହେବ । ଏହାର ରୂପ ଭିନ୍ନ ଭିନ୍ନ ବହିରେ ଭିନ୍ନ ଭିନ୍ନ । ଯଥା ବ, ବ୍‍ , ୱ , ୱ, ଓ୍ୱ , ଅ୍ୱ , ୱ । ୱ ଫଳା '୍ୱ' କୁ ଦୃଷ୍ଟିରେ ରଖି ଏହାର ରୂପଟି 'ୱ' ହେବା ଠିକ୍ ହେବ ।

ସ୍ୱରବର୍ଣ ସହ ସ୍ୱରବର୍ଣ ମାତ୍ରା ରୂପେ ମିଶିବ ନାହିଁ । କିମ୍ବା ସ୍ୱରବର୍ଣ ସହ ଫଳା ଯୋଗ ହୋଇନଥାଏ । 'ୱ' କୁ 'ଓ'+ବ ଫଳା ଲେଖିବା 'ନିପାତନ ସିଦ୍ଧ' ବୋଲି ଭାଷାକୋଷ କହନ୍ତି । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ 'ବୀରଓ୍ୱ' ଅଛି ଯାହା 'ବୀରତ୍ୱ' ଭାବେ ପଢାଯାଉଛି ।

'ଙ୍' ଏକ ଅକ୍ଷର ହେଲେ ସ୍ୱରବର୍ଣ୍ଣ ପରି ଅବର୍ଗ୍ୟ ବ୍ୟଞ୍ଜନ ଅକ୍ଷର ହେବ । 'ୟ,ୱ,ର,ଳ' ପରସ୍ପର ସହ ମିଶି ନଥାଏ କିମ୍ବା ଏ ଗୁଡ଼ିକର ସୂଚକ ମଧ୍ୟ ପରସ୍ପର ସହ ମିଶି ଯୁକ୍ତାକ୍ଷର ଗଠନ କରିନଥାଏ । ଏହି ଅକ୍ଷର ଅନ୍ୟ ବ୍ୟଞ୍ଜନ ପରି ଦ୍ୱିତ୍ୱ ହୋଇ ନଥାଏ । କିନ୍ତୁ ଏ ଚାରିଟି ଅକ୍ଷରର ୫ଟି ସୂଚକ ' ୍ୟ, ୍ୱ , ୍ର , ର୍ , ୍ଳ ' ଅନ୍ୟ ବ୍ୟଞ୍ଜନ ଅକ୍ଷର ସହ ମିଶି ଯୁକ୍ତାକ୍ଷର ଗଠନ କରିଥାଏ । ବର୍ଣ୍ଣମାଳାରେ ଏହି ଚାରୋଟି ବର୍ଣ୍ଣକୁ ଏକାଠି ରଖିବା ଉଚିତ ହେବ ।

''ତରଳ ସାବର୍ଣ୍ଣ୍ୟ ଯେ ବ୍ୟାକରଣେ ଲିହି'' — ଲାବଣ୍ୟବତୀ (ଉପେନ୍ଦ୍ର ଭଞ୍ଜ) । ଏ କଥାଟି ମନେ ରଖିଲେ ଓଡିଆ ଯତିପାତ ବିଷୟରେ ଅନେକ ସଂଶୟ ଦୂର ହେବ ।

କ୍ଷ, ଜ୍ଞ ଶବ୍ଦର ଆରମ୍ଭ ଅକ୍ଷର ହେତୁ ଏହି ଅକ୍ଷର ଥିବା ଶବ୍ଦ 'କ୍ଷତ' ଓ 'ଜ୍ଞାନ'କୁ ଯଥାକ୍ରମେ ଯୁକ୍ତାକ୍ଷର କ+ଷ, ଜ+ଞ ଭାବେ କ ପରେ କ୍ଷ ଓ ଜ ସହିତ ଜ୍ଞ ଅଭିଧାନରେ ରହିଛି । ପ୍ରାଥମିକ ସ୍ତରରେ ପିଲାମାନେ 'କ୍ଷ'କୁ ବର୍ଣ୍ଣମାଳାରେ ପଢୁଥିଲା ବେଳେ ମାଧ୍ୟମିକ ସ୍ତରରେ ଏହାକୁ ଯୁକ୍ତାକ୍ଷର ଭାବେ ପଢିଥାନ୍ତି । ତେଣୁ 'ଓଡ଼ିଆ ବ୍ୟାକରଣ'ରେ 'କ୍ଷ ଜ୍ଞ' ସହିତ ୨୩ଟି 'ସ୍ୱତନ୍ତ୍ର ଯୁକ୍ତ ବ୍ୟଞ୍ଜନ', 'ସରଳ ହିନ୍ଦି ବ୍ୟାକରଣ (ଭାଗ-୧)' ରେ 'କ୍ଷ ତ୍ର ଜ୍ଞ ଶ୍ର' ଚାରିଟିକୁ 'ସଂଯୁକ୍ତ ବ୍ୟଞ୍ଜନ' ଭାବେ ଗ୍ରହଣ କରାଯାଇଛି । ବର୍ଣ୍ଣମାଳା ଶିକ୍ଷାରେ ଏହି ବିଭିନ୍ନତା କୁ ଦୂର କରିବାକୁ ହେବ ।

ଯୁକ୍ତାକ୍ଷର କିମ୍ବା ଉଚ୍ଚାରଣ ଦୃଷ୍ଟିରୁ ଙ୍ ପରି 'ଜ୍ଞ' ର ରୂପ ପୁସ୍ତକ ପତ୍ରପତ୍ରିକା, ଦୂରଦର୍ଶନରେ ୩ (ତିନି) ପ୍ରକାର ଦେଖିବାକୁ ମିଳେ । ଯଥା ଜ୍ଞ, ଜ୍ଞ, ଗ୍ୟଁ । ତେଣୁ ଏ ରୂପ ମଧ୍ୟରୁ କେବଳ ପ୍ରଥମ ରୂପ ଜ୍ଞ (ଜ୍ଞାନମଣ୍ଡଳ) ରୂପକୁ ଗ୍ରହଣ କରିବା ଉଚିତ ହେବ ।

ଭାରତୀୟ ସମସ୍ତ ଭାଷାର ଅକ୍ଷର ମଧ୍ୟରେ ଓଡ଼ିଆ ଅକ୍ଷର ଗୋଲାକାର ହେତୁ ଲେଖିବାକୁ ସହଜ ହୋଇଥାଏ । ଏପରିକି ଓଡ଼ିଆ ଅକ୍ଷରର ଉଚ୍ଚତା ସମାନ । ସେ ଦୃଷ୍ଟିରୁ 'ଇ ଈ ଉ ଊ ଋ ଡ ଋ ୟ ଳ' ଏବଂ 'ଚ ଛ ୯ ଞ ଞ୍ଚ ଞ୍ଛ' ବିଚାର ଯୋଗ୍ୟ । ଇ – ଳ ଅକ୍ଷରର ଶେଷ ଭାଗ ' ୍ ' (ହଳନ୍ତ ନୁହେଁ) ପ୍ରଥମ ଭାଗର ନିମ୍ନ ଭାଗକୁ ଲକ୍ଷ୍ୟ ରଖି ରଖାଯାଇଥାଏ । କିନ୍ତୁ ଚ – ଞ୍ଛ ଲେଖନ ଭିନ୍ନ । ତେଣୁ ଉପରିଭାଗ ଉପରେ ଗୁରୁତ୍ୱ ଦେଇ ନିମ୍ନ ଭାଗର ରୂପକୁ ସଂକୁଚିତ କରାଯାଇଥାଏ । ଯେପରି 'ଚ' ସହିତ ଛ – ଞ୍ଛ ପର୍ଯ୍ୟନ୍ତ ଅକ୍ଷରର ଉଚ୍ଚତାରେ ସମତା ରକ୍ଷା କରାଯାଇପାରିବ । ତେଣୁ 'ଓ'ର ରୂପ ପରିବର୍ତ୍ତେ 'ଞ' ନିମ୍ନ ଅଂଶ 'ଓ' ଅପେକ୍ଷା ଉପରି ଭାଗ 'ଚ' କୁ 'ଞ୍ଚ ଓ ଞ୍ଛ' ର ଉପରିଭାଗ ସହ ସମତା ରକ୍ଷା କରି ଲେଖାଯାଇପାରିବ ।

ଅଭିଧାନରେ 'କ୍ଷ ଓ ଜ୍ଞ'ର କ୍ରମରେ ଭିନ୍ନତା ଦେଖିବାକୁ ମିଳେ । 'ଭାଷାକୋଷ'ରେ ଓ 'ସରଳ ଓଡ଼ିଆ ଅଭିଧାନ (କଟକ ପବ୍ଲିଶିଂ ହାଉସ୍)'ରେ 'କ କ୍ଷ ଖ' ଅକ୍ଷର କ୍ରମ ଅଛି । 'ତରୁଣ ଶବ୍ଦକୋଷ', 'ଅଭିନବ ସରଳ ଉତ୍କଳ ଅଭିଧାନ'ରେ 'କ' ସହିତ 'କ୍ଷ' ଓ 'ଜ' ସହିତ 'ଜ୍ଞ'କୁ ରଖାଯାଇଛି । 'ପ୍ରମୋଦ ଅଭିଧାନ'ରେ 'ହ' ପରେ 'କ୍ଷ' ଥିଲେ ମଧ୍ୟ 'କ୍ଷ' (କ୍+ଷ) ଅକ୍ଷରାଦ୍ୟ ଶବ୍ଦମାନ 'କ' ଅକ୍ଷରାଦ୍ୟ ଶବ୍ଦମାନଙ୍କରେ ରଖାଯାଇଛି । 'ସାଧୁଭାଷାର୍ଥାଭିଧାନ' (୧୮୪୪) ଓ 'ଛବିଳ ଅଭିଧାନ'ରେ 'ହ' ପରେ 'କ୍ଷ' ଅଛି । 'କ୍ଷ ଜ୍ଞ' ମୂଳକ ଶବ୍ଦ ଖୋଜି ଜାଣିବା ପାଇଁ 'ସରଳ ଓଡ଼ିଆ ଅଭିଧାନ' (ଆମ ଓଡ଼ିଶା-୨୦୦୪)ରେ 'ହ' ପରେ 'କ୍ଷ ଜ୍ଞ' ଅଛି । କିନ୍ତୁ 'କ୍ଷ ଜ୍ଞ'କୁ ଏହି ପୁସ୍ତକର 'ଓଡ଼ିଆ ବର୍ଣମାଳା'ରେ ଗ୍ରହଣ କରାଯାଇଛି ।

ଦୁଇଟି ବର୍ଣ ଯୁକ୍ତ ହୋଇ ଯୁକ୍ତ ବର୍ଣ ଗଠନ ହୁଏ । ପୂର୍ବ ଅକ୍ଷର ଅକ୍ଷୁଣ୍ଣ କିମ୍ବା ସୂଚକ ଭାବେ ଉପରେ ରହେ । ଯଥା - ଗ୍+ଦ=ଗ୍ଦ,

ର+କ=ର୍କ । କିନ୍ତୁ ପରବର୍ଣ୍ଣ ଅକ୍ଷୁଣ୍ଣ କିମ୍ବା ସୂଚକଭାବେ ନିମ୍ନରେ କିମ୍ବା ଦକ୍ଷିଣ ଭାଗରେ ରହେ । ଯଥା- ଚ୍+ଛ=ଚ୍ଛ, ସ୍+ପ=ସ୍ପ, ସ୍+ଥ=ସ୍ଥ, ସ୍+ୟ=ସ୍ୟ । ତେଣୁ କ୍+ଷ କିମ୍ବା ଜ୍+ଞ କ୍ଷେତ୍ରରେ ଯୁକ୍ତ ବର୍ଣ୍ଣ ଗଠନ ବିଧି ଭିନ୍ନ । ଅଲଗା ଅକ୍ଷର ଦେଇ ଏହା ଚିହ୍ନିତ କରାଯାଇଥାଏ । ତେଣୁ ଏହି ଦୁଇଟିକୁ ଯୁକ୍ତାକ୍ଷର ଭାବେ ଗ୍ରହଣ ନକରି ପ୍ରଚଳିତ ରୂପକୁ ସ୍ୱତନ୍ତ୍ର ବର୍ଣ୍ଣ ଭାବରେ ଗ୍ରହଣ କରିବା ଠିକ୍ ହେବ ।

ଭାଷାକୋଷରେ ସ୍ୱରବର୍ଣ୍ଣ ପରେ ଂ ଃ ଁ ଓ ବ୍ୟଞ୍ଜନବର୍ଣ୍ଣରେ କକ୍ଷଖ, ଜ ସହିତ ଜ୍ଞ, ଡ ପରେ ଡ଼, ଢ ପରେ ଢ଼, ଯୟରଳଲୱଶଷସହ ଥିଲାବେଳେ ମଧୁବର୍ଣ୍ଣବୋଧରେ ଯରଳବଶଷସ ହକ୍ଷୟଳଡ଼ଢ଼ ଓ ବ୍ୟଞ୍ଜନ ବର୍ଣ୍ଣ ପରେ ଂ ଃ ଁ ଅଛି । ଶିଶୁ ଓଡିଆ ବର୍ଣ୍ଣମାଳାରେ ଡ଼ଢ଼କୁ ବର୍ଣ୍ଣମାଳାରେ ଗ୍ରହଣ କରାଯାଇ ନାହିଁ ଓ ସ୍ୱରବର୍ଣ୍ଣପରେ ଂ ଃ ଁ ସହିତ '୍' (ହଳନ୍ତ)କୁ ରଖାଯାଇଛି । ଏହି ବହିରେ ଅବର୍ଗ୍ୟ ବ୍ୟଞ୍ଜନ ବର୍ଣ୍ଣ 'ଯ ୟ ୱ ର ଳ ଲ ଶ ଷ ସ ହ କ୍ଷ ଜ୍ଞ' କ୍ରମରେ ରଖାଯାଇଛି । 'ୟ, ୱ' ଏକାଠି ରଖାଯାଇଛି ଅର୍ଦ୍ଧସ୍ୱର ଦୃଷ୍ଟିରୁ ବିଚାର କରି । 'ହ' ପରେ 'କ୍ଷ ଜ୍ଞ'କୁ ଶିଶୁ ଓଡ଼ିଆ ବର୍ଣ୍ଣମାଳାରେ ରଖାଯାଇଛି ।

ବର୍ଣ୍ଣର ସଂଖ୍ୟା ଓ କ୍ରମ ମଧ ଏ ବହିର ମୁଖ୍ୟ ଲକ୍ଷ୍ୟ ନୁହେଁ । କେତେ ଗୁଡ଼ିଏ ଭାରତୀୟ ଭାଷାର ଶବ୍ଦକୁ ଇଂରାଜୀ ଅଭିଧାନ ଗ୍ରହଣ କଲାଣି । ଆମେ ତ ଗୋଟିଏ ଓଡିଆ ବାକ୍ୟ ପ୍ରକାଶ କରିବା ପାଇଁ ଗୋଟିଏ ଦୁଇଟି ଅନ୍ୟ ଭାରତୀୟ କିମ୍ବା ବିଦେଶୀ ଭାଷାର ଶବ୍ଦ ବ୍ୟବହାର କରିବାରେ ଅଭ୍ୟସ୍ତ ହେଲୁଣି । ସତରେ ଯେପରି ଭିନ୍ନ ଭିନ୍ନ ଭାଷାର ଶବ୍ଦକୁ ବ୍ୟବହାର ନକଲେ ମନର ଭାବ ପ୍ରକାଶ କରିବା ସମ୍ଭବ ନୁହେଁ । ଆମର ଭାଷାର ସ୍ୱାଭିମାନ ରକ୍ଷାକରିବା ପାଇଁ ଚେଷ୍ଟିତ ହେବା ଉଚିତ । କିନ୍ତୁ କେତୋଟି ବିଦେଶୀ ଶବ୍ଦକୁ ଆମେ ଆପଣେଇ ନେଲେ ମଧ୍ୟବହିରେ ଗ୍ରହଣ କରିବାକୁ ଅନିଚ୍ଛୁକ । ଯେପରି ଟେବୁଲ୍, ଟେଲିଫୋନ୍, ଟର୍ଚ୍ଚ, ବେଲ୍ଟ, ବେଞ୍ଚ, ପେନ୍‌ସିଲ୍ ଆଦି ଶବ୍ଦ ।

ଓଡିଶାର ଭିନ୍ନ ଭିନ୍ନ ଜିଲ୍ଲାର କଥିତ ଭାଷା ଜରିଆରେ ସାଧାରଣ ଓଡିଆ ଲିଖିତ ଅକ୍ଷର ପ୍ରତି ଆକର୍ଷଣ କରିବା, ପରିଚୟ କରିବା ଓ ପଠନ ଦକ୍ଷତା ଆଣିବା ପାଇଁ ଉଦ୍ୟମର ଆବଶ୍ୟକତା ଅଛି । ତେଣୁ ଓଡିଆ ମାଧ୍ୟମ ବିଦ୍ୟାଳୟରେ ଶିକ୍ଷାଦାନର ସଫଳତା ଓ ବିଦ୍ୟାଳୟରେ ଛାତ୍ର ଛାତ୍ରୀଙ୍କ ସଂଖ୍ୟା ବୃଦ୍ଧି କରିବା ଉପରେ ଗୁରୁତ୍ୱ ଦେବା ଦରକାର । ଏଥିପାଇଁ ଓଡିଆ ଶବ୍ଦର ବନାନରେ ସ୍ଥିରତା ଆଣିବାକୁ ହେବ ।

'ଶିଶୁ ଓଡିଆ ବର୍ଣ୍ଣମାଳା'ରେ ବର୍ଣ୍ଣକ୍ରମ ବିଚାର କରି ନିମ୍ନ କ୍ରମରେ ରଖିବାକୁ ଲେଖକ ସ୍ଥିର କରିଛନ୍ତି ।

ଅ ଆ ଇ ଈ ଉ ଊ ଋ ଏ ଐ ଓ ଔ

ଂ ଃ ଁ ୍

କ ଖ ଗ ଘ ଙ ଚ ଛ ଜ ଝ ଞ ଟ ଠ ଡ ଢ ଣ

ତ ଥ ଦ ଧ ନ ପ ଫ ବ ଭ ମ

ଯ ୟ ୱ ର ଳ ଲ ଶ ଷ ସ ହ କ୍ଷ ଜ୍ଞ

## ଲେଖକ ପରିଚୟ



ଜନ୍ମସ୍ଥାନ - ସାନଓ୍ୱାଉବରାଇ (ପାର୍ବତୀପୁର),
ବ୍ଲକ୍ - ବିରିଡି, ଜିଲ୍ଲା - ଜଗତସିଂହପୁର

ପିତା - ✓ ନରୋତ୍ତମ ମହାନ୍ତି

ମାତା ✓ ରସାମଣି ମହାନ୍ତି

ଯୋଗ୍ୟତା - ବି.ଏସ୍.ସି., ବି. ଇଡି. (ବିଜ୍ଞାନ)

ବୃତ୍ତି - ଶିକ୍ଷକତା

ରେଭେନ୍‌ସା କଲେଜ୍‌ରୁ ବି.ଏସ୍.ସି. ଓ ରିଜିଓନାଲ୍ କଲେଜରୁ ବି.ଇଡି. ତାଲିମ ପାଇବା ପରେ ତା ୨୦.୯.୧୯୭୩ ରେ ବିପିନ ବିହାରୀ ଉଚ୍ଚ ବିଦ୍ୟାଳୟ , ବାଗଲପୁର, ବାଲିପାଟଣା, ଖୋର୍ଦ୍ଧା (ପୁରୀ) ଓ ୩୦.୪.୨୦୦୩ ରୁ ଆଜ ସୁଦ୍ଧା ପ୍ରତାପଶାସନ ଉଚ୍ଚ ବିଦ୍ୟାଳୟ, ବାଳକାଟି, ବାଲିଅନ୍ତା, ଖୋର୍ଦ୍ଧାରେ ଶିକ୍ଷକତା । ମାତ୍ର ତା ୧୦.୧.୧୯୭୬ ରୁ ଆଜ ସୁଦ୍ଧା ଭାରପ୍ରାପ୍ତ ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟ ପରିଚାଳନା । ପ୍ରାଥମିକ ଶିକ୍ଷାର ବିକାଶ ନିମିତ୍ତ 'ଶିଶୁ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନ' ସ୍ଥାପନ । ଓଡିଶାରେ ପ୍ରଥମ ଶ୍ରେଣୀର ପାଠ୍ୟପୁସ୍ତକ, ସି.ଟି. ତାଲିମ କାଳରେ ସ୍ୱତନ୍ତ୍ର ଭାବେ ପ୍ରଥମ ଶ୍ରେଣୀରେ ଶିକ୍ଷାଦାନ, ପରୀକ୍ଷାରେ ପ୍ରତି ପିଲାଙ୍କୁ ପ୍ରଶ୍ନ ପ୍ରଦାନ ବ୍ୟବସ୍ଥା ପ୍ରଚଳନ ପ୍ରତି ଆଗ୍ରହ ପ୍ରକାଶ । ଶିକ୍ଷାର ବିକାଶ ନିମିତ୍ତ ସର୍ବୋପରି ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ସରକାରୀ ଓ ବେସରକାରୀ ସଂସ୍ଥା ଜରିଆରେ ଅନୁଷ୍ଠିତ ସଭା ସମିତିରେ ଅଂଶଗ୍ରହଣ । ସମ୍ବାଦପତ୍ର, ପତ୍ର, ପତ୍ରିକା ଓ ସ୍ମରଣିକାରେ ଗ୍ରହଣଯୋଗ୍ୟ ମତାମତ ପ୍ରକାଶ । ମାତୃଭାଷା ଓଡିଆର ବର୍ଣ୍ଣ ସଂଖ୍ୟା ଓ କ୍ରମ ନିର୍ଦ୍ଧାରଣ ନିମିତ୍ତ ପୁସ୍ତକ ଓ ପାଠ୍ୟୋପକରଣ ପ୍ରସ୍ତୁତି ।

ପ୍ରକାଶିତ ପୁସ୍ତକ ଓ ପାଠ୍ୟୋପକରଣ

୧. ଶିଶୁ ଓଡିଆ ବର୍ଣ୍ଣମାଳା

୨ ଅକ୍ଷର ତାସ୍

୩. ଅକ୍ଷର ଚାର୍ଟ

ପ୍ରକାଶନ ଉଦ୍ୟମରେ

୧ ଇନ୍ଦୁମତି ଶିଶୁ ହସ୍ତଲିପି

୨. ଶିଶୁ ଓଡିଆ ବର୍ଣ୍ଣବୋଧ ୧ମ ଭାଗ

୩. ଶିଶୁ ବନାନ ଅଭିଧାନ - ୧ମ ଭାଗ